# ତୋ' ବିନୁ ଅନ୍ୟ ଗତି ନାହିଁ



## ପ୍ରମିଳା ପତି

'ତୋ' ବିନୁ ଅନ୍ୟ ଗତି ନାହିଁ'
(ଭକ୍ତି ଗୀତ)

ଲେଖିକା :
ଶ୍ରୀମତୀ ପ୍ରମିଳା ପତି
ଶିକ୍ଷୟିତ୍ରୀ, ସରକାରୀ ପ୍ରେସ୍ କଲୋନୀ, ଉ.ପ୍ରା. ବିଦ୍ୟାଳୟ
ନୂଆପଡ଼ା, ମଧୁପାଟଣା, କଟକ-୧୦
ଦୂରଭାଷ : ୯୭୭୭୧୮୦୯୪୯

ପ୍ରଥମ ପ୍ରକାଶ : ୨୦୧୩

ପ୍ରକାଶକ:
ରବି ମିଶ୍ର
କାଠଯୋଡ଼ି ରୋଡ୍ (ଘାଟକୂଳ ପାଖ)
ମଧୁପାଟଣା, କଟକ-୧୦

ପ୍ରଚ୍ଛଦ : ଶ୍ରୀ ଶଶିକାନ୍ତ ରାଉତ

ମୁଦ୍ରଣ :
ସଂସାର ପ୍ରେସ
ତଳତେଲେଙ୍ଗା ବଜାର, କଟକ-୯

ମୂଲ୍ୟ : ୧୦୦ ଟଙ୍କା

TO BINU ANYA GATI NAHIN
(Devotional Songs)

*Written by :*
Srimati Pramila Pati
Teacher, Govt. Press Colony U.P. School
Nuapada, Madhupatna, Cuttack-10
Mob : 9777180949

First Edition : 2013

*Publisher :*
Sri Rabi Mishra
Kathajodi Road, Near Ghat
Madhupatna, Cuttack-10

*Cover by :*
Sri Sashikanta Rout

*Printed at :*
Sansar Press
Talatelenga Bazar, Cuttack-9

Price : Rupees One hundred only

# ଉତ୍ସର୍ଗ



*"ତୋ'ଠାରେ ସର୍ବସ୍ୱ ମୋର*
*କଲି ଅରପଣ*
*ତୋ' ରଙ୍ଗା ଚରଣେ ପ୍ରଭୁ*
*ପଶିଲି ଶରଣ ।"*

ପ୍ରମିଳା ପତି

# ଅଭିମତ

ଯେଉଁ ପଦାବଳୀରେ ଇଷ୍ଟଦେବଦେବୀଙ୍କର ନାମ, ରୂପ ଓ ମହିମାର ଅନ୍ତରଙ୍ଗ ଉଲ୍ଲେଖ ଥାଏ, ତାକୁ ଭଜନ କହନ୍ତି । 'ଭଜ୍' ଧାତୁରୁ ଅଧିକରଣ ଅର୍ଥରେ ଅନ୍ ଯୁକ୍ତ ହୋଇ 'ଭଜନ' ଶବ୍ଦ ଉତ୍ପନ୍ନ ହୋଇଛି । ଏହା ମୂଳତଃ ଉପାସନା ଓ ମହିମାଗାନର ଅର୍ଥ ପ୍ରକାଶ କରିଥାଏ । 'ଜଣାଣ'ରେ କବି ତାଙ୍କର ଆରାଧ୍ୟ ଦେବତାଙ୍କ ନିକଟରେ ନିଜର ଅଭିଳାଷ ପୂରଣର ଆକାଂକ୍ଷା ଜଣାଇଥା'ନ୍ତି ।

'ତୋ' ବିନୁ ଅନ୍ୟ ଗତି ନାହିଁ' ଗୀତିକବି ପ୍ରମିଳା ପତିଙ୍କର ଏକ ସୁନ୍ଦର ଭକ୍ତିଗୀତ ସଂକଳନ । ସମୁଦାୟ ପୁସ୍ତକରେ ଗୀତିକବି ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ ଏବଂ ଅନ୍ୟ ଦେବଦେବୀଙ୍କ ନିକଟରେ ନିଜକୁ ଅକପଟ ଭାବରେ ଖୋଲିଦେଇଛନ୍ତି । ଶ୍ରୀଜଗନ୍ନାଥ ଚିରକାଳ ଭକତ ଦୁଃଖରେ ଦୁଃଖୀ । ତେଣୁ ଭକ୍ତ ତା'ର ଚର୍ମ ଚକ୍ଷୁରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଜୀବନକୁ ସାର୍ଥକ କରିବାର ପିପାସା ପୋଷଣ କରିଥାଏ । ବନମାଳୀ, ଗୋପାଳକୃଷ୍ଣଙ୍କ ଭଳି ଗୀତିକବି ପ୍ରମିଳା ପତି ମଧ୍ୟ ଶ୍ରୀଜଗନ୍ନାଥଙ୍କ ନିକଟରେ ନିଜକୁ ସମର୍ପଣ କରିଦେବାକୁ ବ୍ୟଗ୍ର । ସଂପୂର୍ଣ୍ଣ ପୁସ୍ତକରେ ଅଧିକାଂଶ ଗୀତ ଶ୍ରୀଜଗନ୍ନାଥକେନ୍ଦ୍ରିକ ।

ଓଡ଼ିଶାର ଗଣମାନସରେ ଶ୍ରୀଜଗନ୍ନାଥ ଅତି ଆପଣାର ଦେବତା ରୂପରେ ପ୍ରତିଷ୍ଠିତ । ଲୋକେ ଜଗନ୍ନାଥଙ୍କୁ ଡାକି ଶୁଅନ୍ତି, ଜଗନ୍ନାଥଙ୍କ ନାମ ଧରି ଉଠନ୍ତି । ଚଡ଼କ ପଡ଼ିଲେ ଜଗନ୍ନାଥ, ମଡ଼କ ପଡ଼ିଲେ ଜଗନ୍ନାଥ । ଆପଦବିପଦ ସବୁଥିରେ ଜଗନ୍ନାଥ । ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାମାତ୍ରେ ଦର୍ଶନାର୍ଥୀର ଚର୍ମଚକ୍ଷୁ ପବିତ୍ର ହୋଇଯାଏ । ସେଥିପାଇଁ ସେ ଜଞ୍ଜାଳଗ୍ରସ୍ତ ଜୀବନର ଅବସର ଫାଙ୍କରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ତା'ର ସନ୍ତପ୍ତ ପ୍ରାଣକୁ ଶୀତଳ କରିଥାଏ । ନିଜେ ଶିଆଳି ଲଟା ହୋଇ ଶ୍ରୀଜଗନ୍ନାଥଙ୍କର ଅଙ୍ଗସ୍ପର୍ଶ କରିବାର କାମନା ରଖିଥାଏ । ଗୀତିକବିଙ୍କ ଭାଷାରେ–

ତୁ ଯେବେ କାଳିଆ କୋଳେଇ ନବୁରେ
ଶିଆଳି ଲଟା ମୁଁ ହୋଇ
ଶ୍ରୀଅଙ୍ଗରେ ତୋର ଛନ୍ଦି ହୋଇଯିବି
ସେଇ ତ ମୋ ସୁଖ ଆହା ॥

ପୁଣି ଲେଖିଛନ୍ତି–

ନୀଳାଚଳ ଧାମରୁ ମୋ ଘର ଅଗଣା ଯାଏ
ପ୍ରୀତିର ଶିଆଳି ଲଟା ଝୁମି ଝୁମି ଲମ୍ବିଯାଏ ॥

ଏହିସବୁ ଅନୁଭୂତିକୁ ପାଥେୟ କରି ପ୍ରମିଳା ପତି ତା' ସହିତ ସାମିଲ କରିଛନ୍ତି ରାଧାକୃଷ୍ଣଙ୍କ ପ୍ରେମ ପ୍ରଣୟ, ଶ୍ୟାମ ପ୍ରେମଗୀତି ।

ମୁଁ ଯେବେ ଝୁଲିଲି ଶ୍ୟାମ ପ୍ରେମ ମଧୁକୁ
ସେ ମୋତେ କରିଲା ପର ଦେଇଗଲା ଯାତନାକୁ ॥

କିମ୍ବା

ମନ ମନ୍ଦିରେ ମୋର ଆସ ଗିରିଧାରୀ
ନଟବର ବେଶ ହୋଇ
ନାଚି ଢଳି ଢଳି କଞ୍ଜ ଚରଣ ଚାଳି
ମଧୁରେ ମୁରଲୀ ବାଇ ॥

ପୁନଶ୍ଚ ସେ ଲେଖିଛନ୍ତି–

କଳଙ୍କିନୀ ଅପବାଦେ ଗୋପରେ ନାଗରା ବାଜେ
ପ୍ରୀତିଟା ଅବୁଝା ଭାରି ନ ମାନି ବାଧା କାହାରି
କଳଙ୍କକୁ କଲାଣି ସେ କୁଙ୍କୁମ ଟିପା ॥

ଏବଂ,

ସାରା ବୃନ୍ଦାବନ ଖୋଜି ମୁଁ ଆସିଲି, ଖୋଜିଲି ଯମୁନା କୂଳେ
ଗୋଧନ ବାହୁଡ଼ା ପଥକୁ ଚାହିଁଲି ଫେରିବ ମୋ ଧନ କାଳେ ॥

ଓଡ଼ିଆ ଗୀତିକବିମାନେ ଓଡ଼ିଆ ଜାତିର ଚିର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ

କରୁଣା ଭିକ୍ଷାକରି ବହୁ ଗୀତ ରଚନା କରିଛନ୍ତି । ଓଡ଼ିଆ ଜାତିର ଚେତନ ଓ ଅବଚେତନରେ ଶ୍ରୀଜଗନ୍ନାଥ କେବଳ ଦେବତା ଭାବରେ ନୁହନ୍ତି; ପରନ୍ତୁ ଆପଣାର ଜଣେ ଆତ୍ମୀୟ ଭାବରେ କାଳେ କାଳେ ବିରାଜିତ । ଏହା ବ୍ୟତୀତ ଓଡ଼ିଆ ଗୀତିକବିମାନେ ଶ୍ରୀଜଗନ୍ନାଥଙ୍କୁ 'ମଣିମା' ଓ 'ଗୋସାଇଁ' ଭାବରେ ସମ୍ବୋଧନ କରି ତାଙ୍କ ପାଖରେ ବାଢ଼ିଛନ୍ତି ନିଜର ଅଭାବ ଅସୁବିଧାର କରୁଣ ଗାଥା । ପୁଣି ବେଳେବେଳେ ଜଗନ୍ନାଥଙ୍କ ଉପରେ ଅଭିମାନ କରି ତାଙ୍କୁ ଗାଳି ଦେବାପାଇଁ ସୁଦ୍ଧା କୁଣ୍ଠିତ ହୋଇନାହାନ୍ତି । ସେମାନଙ୍କର ସ୍ୱରରେ ମିଶିଯାଇଛି ଆତ୍ମୀୟତାର ମୁଗ୍ଧ ମୂର୍ଚ୍ଛନା । ଗୀତିକବିଙ୍କ ଭାଷାରେ –

ଧନହୀନ ବୋଲି କପଟ କି କଲୁ
ହାଟ ମଝିଟାରେ ବାଟ ବୁଡ଼ାଇଲୁ
ମିଛେ ଦୀନବନ୍ଧୁ ବୋଲାଇଲୁ ।

ପୁଣି ଲେଖିଛନ୍ତି–

ତୁମ ଛଡ଼ା ଫୁଲ ନିର୍ମାଲ୍ୟ ପାଇଁ କି
ନୋହିଲି ମୁହିଁ ଭାଜନ
ମରଣରୁ ବଳି ଯାତନା ବଢ଼ିଲା
ଲୁହରେ ଭରେ ନୟନ
ଅନାଥ ହୋଇଲି କର୍ମକୁ ନିନ୍ଦିଲି
ଥାଉ ତୁମେ ଦୀନନାଥ ॥

କେତେବେଳେ ପ୍ରଭୁଙ୍କୁ କଳାକାହ୍ନୁ, କଳାମୁକୁନ୍ଦ, କଳାଭଅଁର ବୋଲି ସମ୍ବୋଧନ କରି ପ୍ରଭୁଙ୍କର ପାଖେ ପାଖେ ରହିବାର ଇଚ୍ଛାପ୍ରକାଶ କରିଛନ୍ତି । ଯଥା–

(୧) ଆ'ରେ ମୋ କଳାକାହ୍ନୁ ମୋ କୋଳକୁ ଫେରିଆ
କାନ୍ଦୁଛି ଯଶୋଦା ମାଆ

(୨) ତୁ ନଉକା ତୁ ନାଉରୀ
ତୁ ଜଗିଥାଉ ଘାଟ ମୋ କଳାମୁକୁନ୍ଦ

(୩) ମୁଁ ଫୁଲ ହେଲେ ତୁ ମଧୁଚୋର କଳାଭଅଁର

ପରିଶେଷରେ, ମା' ତାରିଣୀ, ଭୋଳାଶଙ୍କରଙ୍କୁ ମଧ୍ୟ ତାଙ୍କ ଗୀତ ନୈବେଦ୍ୟରେ ସ୍ଥାନ ଦେବାକୁ ଭୁଲିନାହାନ୍ତି କବି ।

ମୋଟ ଉପରେ 'ତୋ' ବିନୁ ଅନ୍ୟ ଗତି ନାହିଁ' ଗୀତି ପୁସ୍ତକଟି ପ୍ରମିଳା ପତିଙ୍କର ଭାବଭକ୍ତିର ଏକ ଉଚ୍ଛ୍ୱସିତ ଉଚ୍ଚାରଣ । ଗୀତିକବିତା ରଚନାରେ କବିଙ୍କର ଭବିଷ୍ୟତ ବାରି ହୋଇପଡ଼େ ।

ଗୌରହରି ଦଳାଇ
ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ
ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାରପ୍ରାପ୍ତ

# ମୋ' କଥା

''କରି କରାଉଥାଏ ମୁହିଁ
ମୋ' ବିନୁ ଅନ୍ୟ ଗତି ନାହିଁ ।''

ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ଏଇ ବାଣୀକୁ ହୁଏତ ସମସ୍ତେ ହୃଦୟଙ୍ଗମ କରିପାରନ୍ତି ନାହିଁ । ଏଣୁ ନିଜକୁ ଭଗବାନ୍‌ଙ୍କଠାରୁ ଅଧିକ ବଳବାନ୍, ଚତୁର, ଧନୀ, ମାନୀ ବୋଲି ବିଚାର କରି ମଣିଷ ମନରେ ଅହଂଭାବ ସୃଷ୍ଟି ହୋଇଥାଏ । କିନ୍ତୁ ଯେତେବେଳେ ସଙ୍କଟ ଆସେ, ସେତେବେଳେ ଭଗବାନ୍‌ଙ୍କ ନାମ ତୁଣ୍ଡରେ ଧରିଥାଏ । ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି– ''ମୋତେ ତୋର ସମସ୍ତ ସମର୍ପି ଦେ । ଫଳର ଆଶା ନ ରଖି ଖାଲି କର୍ମ କରି ଯା' ।'' ଏହାର ଅର୍ଥ ପାପପୁଣ୍ୟ, ଭଲମନ୍ଦ ସବୁକିଛି ତାଙ୍କରି ସୃଷ୍ଟି । ମୋହ, ମାୟାରେ ଜଡ଼ାଇ ସେ ମଣିଷକୁ ପରୀକ୍ଷା କରନ୍ତି । କାରଣ ମଣିଷ ଏ ସଂସାରର ସର୍ବଶ୍ରେଷ୍ଠ ଜୀବ । ବୁଦ୍ଧି, ଜ୍ଞାନ, ବିଚାର ସବୁଥିରେ ଶ୍ରେଷ୍ଠ । ଏଣୁ ପ୍ରତ୍ୟେକ ମନୁଷ୍ୟ ପାପପୁଣ୍ୟ, ଭଲମନ୍ଦର ବିଚାର କରି କର୍ମ କରିବା ଉଚିତ୍ । ଏକଥା ସତ ଯେ, ସଂସାର ବନ୍ଧନ ମାୟାବିଜଡ଼ିତ । କାମ, ଲାଳସା, ମୋହ, ମାୟାରେ ଆଚ୍ଛାଦିତ । ସାଂସାରିକ ମାୟାରେ ବୁଡ଼ିରହି ନିଜ ପ୍ରିୟପରିଜନ, ବନ୍ଧୁ, ସଖା, ସୋଦର ଓ ପାରିପାର୍ଶ୍ୱିକ ପରିସ୍ଥିତି ପ୍ରତି ନିଜର କର୍ତ୍ତବ୍ୟ ସଂପାଦନ କରିବା ଉଚିତ୍ । ମାତ୍ର ମଣିଷ ବିବେକବନ୍ତ ଓ ବିଚାରବନ୍ତ ହୋଇଥିବାରୁ କର୍ତ୍ତବ୍ୟ କଲାବେଳେ ତା'ର ଭଲ ଓ ମନ୍ଦ ଦିଗ ପ୍ରତି ସଚେତନ ରହିବା ମଧ୍ୟ ଜରୁରୀ । ଯେଉଁ ସର୍ବନିୟନ୍ତା, ସର୍ବଶକ୍ତିମାନ, ସର୍ବବ୍ୟାପୀ ଭଗବାନ୍ ଆମକୁ ମଣିଷ ଜନ୍ମ ଦେଇ ଏ ସୃଷ୍ଟିକୁ ପଠାଇଛନ୍ତି, ଯାହାଙ୍କ କରୁଣା ଯୋଗୁ ଆମର ସ୍ନେହ, ପ୍ରେମ, ସୁଖ, କାମନା, ବାସନାର ପରିତୃପ୍ତି ଘଟୁଛି; ତାଙ୍କ ପ୍ରତି ଆମର କୃତଜ୍ଞତା ରହିବା ଦରକାର । ତାଙ୍କର ଉଦ୍ଦେଶ୍ୟକୁ ସଫଳ କରି ଏ ବିଶ୍ୱକୁ ଅମୃତମୟ କରିବା ମଣିଷର ଧ୍ୟେୟ ହେବା ଉଚିତ୍ ।

ମଣିଷ ଖରାପ କାମଟିଏ କଲାବେଳେ ଭଗବାନ୍‌ଙ୍କ କଥା ମନେପଡ଼ିଗଲେ ସେ ଭୟଭୀତ ହୁଏ । କାରଣ ପାପ କଲେ ନର୍କ ଭୋଗ, କର୍ମାନୁଯାୟୀ ଫଳପ୍ରାପ୍ତିର ଆଶଙ୍କା ତାକୁ ଦୁଷ୍କର୍ମରୁ ନିବୃତ୍ତ କରାଏ । ମନରୁ ସକଳ ଦୁଃଶ୍ଚିନ୍ତା, ଅମଙ୍ଗଳ ଭାବନା, ରାଗ, ଦ୍ୱେଷ ଓ ଅହଂକାର ଦୂର କରି ସତ୍‌ମାର୍ଗରେ ପରିଚାଳିତ ହେବାପାଇଁ ଓ ଅମାନିଆଁ, ଲଗାମ୍‌ଛଡ଼ା ମନକୁ ନିୟନ୍ତ୍ରିତ କରିବା ପାଇଁ ଭଗବାନ୍‌ଙ୍କୁ ପୂଜା କରାଯାଏ । ଭଜନ, ଜଣାଣ ମାଧ୍ୟମରେ ତାଙ୍କୁ କୃତଜ୍ଞତା ଜ୍ଞାପନ କରାଯାଏ । ମନର ଶାନ୍ତି ପାଇଁ ତାଙ୍କର ଗୁଣକୀର୍ତ୍ତନ କରାଯାଏ । ଭଜନ, ଜଣାଣ ମାଧ୍ୟମରେ ହିଁ ଭକ୍ତ ଭଗବାନ୍‌ଙ୍କର ନିକଟତର ହୁଏ । କେତେବେଳେ ସେ ଜୀବନଯୁଦ୍ଧରେ ଅସଫଳ ହୋଇ ଅଭିମାନରେ ଭଗବାନ୍‌ଙ୍କ ଉପରେ ଦୋଷ ଲଦିଦିଏ ତ କେତେବେଳେ ସବୁକିଛି ପାଇବାର ସୁଖରେ ଆତ୍ମହରା ହୋଇ ଗୁଣଗାନ କରିଥାଏ । ଭଗବାନ୍ ଭକ୍ତିରେ ବନ୍ଧା । ଜୀବନ-ନଉକା ସହଜରେ ଓ ସୁଖରେ ସଂସାର-ସାଗର ପାରି ହେବାପାଇଁ ଭକ୍ତି ହିଁ ଶକ୍ତି ଦିଏ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ବୟସ ନିର୍ବିଶେଷରେ ସମସ୍ତେ ଭଗବାନ୍‌ଙ୍କ ନିକଟରେ ନିଜକୁ ସମର୍ପି ଦେଇ ତାଙ୍କର ଗୁଣଗାନ କରି ଶାନ୍ତିଲାଭ କରିବା ଶ୍ରେୟ ଅଟେ ।

ଏହି ଭକ୍ତିଗୀତି କବିତା ସଂକଳନ ମାଧ୍ୟମରେ ମୁଁ ମୋ' ନିଜସ୍ୱ ଭକ୍ତି-ଭାବନା ଢାଳି ଦେଇଛି ମାନ-ଅଭିମାନରେ । ଦୋଷାରୋପ କରିଛି ବଡ଼ ଠାକୁରଙ୍କୁ । ମାଆ ସ୍ନେହମୟୀ, କରୁଣାମୟୀ । ଏଣୁ ସେଇ ଜଗତମାତାଙ୍କୁ ଜଣାଇଛି ମୋ' ମନର କଥା । କୋପେ ବର ଅବା ତପେ ବର ଦେଉଥିବା ଦେବ ଦେବ ମହାଦେବ ଆଶୁତୋଷଙ୍କୁ ବାଢ଼ିଦେଇଛି ମୋର ଭକ୍ତି-ନୈବେଦ୍ୟ । ଆଶା ରଖିଛି ଏହି ଭକ୍ତି ସଙ୍ଗୀତଗୁଡ଼ିକ ପାଠକମାନଙ୍କୁ ନିଶ୍ଚୟ ଭଗବତ୍ ପ୍ରେମରେ ଉଦ୍‌ବୁଦ୍ଧ କରାଇବ ।

ମୋର ସ୍ୱାମୀ ଶ୍ରୀଯୁକ୍ତ ରବି ମିଶ୍ର, 'ସଂସାର' ପତ୍ରିକାର ସଂପାଦିକା ଶ୍ରୀମତୀ ଅନସୂୟା ନନ୍ଦ ପୁସ୍ତକଟିର ପ୍ରକାଶନରେ ମତେ ସାହାଯ୍ୟ ଓ ସହଯୋଗ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । ସର୍ବୋପରି ଓଡ଼ିଶା ସାହିତ୍ୟ ଏକାଡେମୀ ଓ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାରପ୍ରାପ୍ତ ଓଡ଼ିଶାର ସ୍ୱନାମଧନ୍ୟ ବରିଷ୍ଠ ଗୀତିକାର ସମ୍ମାନନୀୟ ଶ୍ରୀଯୁକ୍ତ ଗୌରହରି ଦଳାଇ ଗୀତଗୁଡ଼ିକ ସଂଶୋଧନ

କରିବା ସହିତ  ନିଜର ଅଭିମତ ପ୍ରଦାନ କରିଥିବାରୁ ମୁଁ ତାଙ୍କ ନିକଟରେ ବିଶେଷଭାବରେ ଋଣୀ ।

ଶେଷରେ ମୋର ସମସ୍ତ ଦୁଷ୍କର୍ମ, ପାପ ଓ ଅହଂଭାବକୁ କ୍ଷମା କରି ଏ ସଂସାର ଅଥଳ ସାଗରରୁ ଭଲରେ ଭଲରେ ଉଦ୍ଧାର କରିବା ସହିତ ସାରାବିଶ୍ୱକୁ ଅମୃତମୟ, ମଙ୍ଗଳମୟ କରିବାକୁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରି ଆପଣଙ୍କ ମତାମତ ଅପେକ୍ଷାରେ...... ।

ପ୍ରମିଳା ପତି

# ସୂଚୀପତ୍ର

—୧—

ପରଂବ୍ରହ୍ମ, ପରାତ୍ପର, ପରମେଶ୍ୱର
ହେ ପରମପିତା ତୁମେ ଦୟାରସାଗର ।୦।

ଶୂନ୍ୟଦେହୀ ଶୂନ୍ୟେ ବାସ ଶୂନ୍ୟପୁରୁଷ
ଜ୍ଞାନ ନେତ୍ରେ ଦିଅ ଦେଖା ହୃଦୟରେ ବାସ
ଭାବକୁ ନିକଟ ତୁମେ ଅଭାବକୁ ଦୂର
ହେ ପରମପିତା ତୁମେ ଦୟାର ସାଗର ।୧।

ଅଣାକାର, ଅଣାକ୍ଷର ଅଜପା ମନ୍ତ୍ରରେ ଜପ
ତୁମ ନାମ, ଧ୍ୟାନ ବିନା ତୁଚ୍ଛା ପୂଜାର୍ଚ୍ଚନା, ତପ
ନଉକା ନାଉରୀ ତୁମେ ଭବସାଗରର
ହେ ପରମପିତା ତୁମେ ଦୟାର ସାଗର ।୨।

ମିଛେ ଖୋଜି ବୁଲେ ସିନା ମନ୍ଦିରେ ନିତି
ଧୂପ-ଦୀପ-ନଇବେଦ୍ୟ ବାଢ଼ି ମୂଢ଼ମତି
ତିନି ଭୁବନରେ ପରା ତୁମ ଚରାଚର
ହେ ପରମପିତା ତୁମେ ଦୟାର ସାଗର ।୩।

ଶିଶୁର ଦରୋଟି କଣ୍ଠେ, କାବ୍ୟ-କବିତାରେ
ଦୁଃଖୀର ହୃଦୟେ ଅଛ— ଧନୀର ମନ୍ଦିରେ
କରି କରାଉଥାଅ ସାଜି କଳାକାର
ହେ ପରମପିତା ତୁମେ ଦୟାର-ସାଗର ।୪।



-୨-

ନିରଳସ କର ଅନ୍ତର ମୋହର
ନିର୍ମଳ କର ପ୍ରଭୁ
କୁସୁମିତ ଶତ-କୁସୁମ ହାସରେ
ଜୀବନ ପଥ ମୋ ହସୁ ।୦।
ବାଣୀକୁ ମୋହର କର ହେ ମଧୁର
ଦୃଷ୍ଟିକୁ କର ସ୍ନିଗ୍ଧ
ହୃଦ-ପାରାବାର ଶାନ୍ତ କରାଇ
ଭରିଦିଅ ଶକ୍ତି, ଦମ୍ଭ
ତୁମରି ଆଶିଷ-ଆଲୋକ ପରଶେ ମଳିନତା ଯେତେ ଲିଭୁ ।୧।
କରେ ମୋର ଦିଅ ଅପାର ଶକତି
ହୃଦୟେ ଦିଅ ସାହସ
ଜାଗ୍ରତ କର ଚେତନା ମୋହର
ହୁଏ ମୁହିଁ ନିର୍ବିଶଙ୍କ
ଆନ ଦୁଃଖେ ଦୁଃଖୀ ଆନ ସୁଖେ ସୁଖୀ ହେବାର ପ୍ରେରଣା ଜାଗୁ ।୨।
ଅଧରେ ଫୁଟାଅ ସମବେଦନାର
ଅମୃତମୟ ହସ
ସଂପଦେ, ବିପଦେ ନ ହୋଇ ଅଧୀର
କରେ ତୁମ ନାମ ଜପ
ଜଗତ କଲ୍ୟାଣ ସାଧନାର ହିତେ...ଜୀବନ ମୋହର ଲାଗୁ ।୩।



—୩—

ଯେ ରୂପ ଦର୍ଶନେ ସନ୍ତାପିତ ପ୍ରାଣେ
ବୋଲି ହୋଇଯାଏ ଚନ୍ଦନ
ସେ ରୂପ ଦର୍ଶନ କରି ମୋ ଜୀବନ
ହେଉ ପ୍ରଭୁ ଚିର ମହାନ ।୦ ।

ଯେ ନାମ ଶ୍ରବଣେ ପିପାସିତ ପ୍ରାଣେ
ଶୀତଳ - ଜଳର - ଜୁଆର
ସେଇ ନାମ ଗାଇ ସୁଖୀ ହୁଏ ମୁହିଁ
ଆଶିଷ କର ହେ ଈଶ୍ୱର ।୧ ।

ମାନସ-ମନ୍ଦିରେ ସେ ରୂପେ ବିରାଜି
କର ପ୍ରଭୁ ମୋତେ ପବିତ୍ର
ଆଖି ବୁଜିଲେ ବି ଦେଖି ମୁଁ ପାରିବି
ମୋ ପ୍ରଭୁ ଦେବ ଅନନ୍ତ ।୨ ।



-୪-

ଛୋଟ ମୋର ମନେ ପ୍ରଭୁ
ଭରିଦିଅ ଶକତି
ଡରିଯିବି ନାହିଁ ଆସୁ
ଯେତେ ବାଧା, ବିପତ୍ତି ।୦।

ଫୁଲ ପରି ରୂପ ରସେ ଭରିଦେବ ଦୁନିଆ
ଜଳବିନ୍ଦୁ ପରି ଝରି ଲିଭାଇବି ଦୁଃଖ ନିଆଁ
ସ୍ନେହ, ପ୍ରେମ-ମଧୁ ନୀର ବୁକୁରେ ମୋ ସାଇତି
ତୁମରି ଯଶ, କରୁଣା ଭଜୁଥିବି ମୁଁ ନିତି ।୧।

ସୂର୍ଯ୍ୟ ପରି ଜଳି ଜଳି ବିତରିବି ଆଲୋକ
ମାଟି ପରି ଦୁଃଖ ସହି ହୋଇବି ମୁଁ ମହତ
ମନେ ମୋର ଦିଅ ଭରି ଦେଶ ସେବା-ପୀରତି
ଟିକି ହାତ ଯୋଡ଼ି ପ୍ରଭୁ କରୁଅଛି ପ୍ରଣତି ।୨।



–୫–

ସଖୀରେ !

ଭଜିବିନି ଆଉ କଳାବଦନକୁ

ମୋ କାଳିଆ ସୁନାକୁ

ସେ କଳାକୁ ଗଳାମାଳା        କରି ଯା' ସହୁଛି ନିତି

ମିଛ ଅପବାଦକୁ ।୦।

ନ ଚାହିଁବି କଳାମୁଖ...        ସେ ଯେବେ ହେଲା ବିମୁଖ

ମୋହ ପରି ଦୀନ ହୀନଠାରେ

ଲୋଡ଼ା ନାହିଁ ତା ପୀରତି        ପୋତୁ ମୋ ଭାବଭକତି

ଝାସ ଦେବି ଦୁଃଖ-ସିନ୍ଧୁ-ନୀରେ

ଲାଜ ମାଡ଼େ ସଖୀ ତାକୁ କୃପାସିନ୍ଧୁ ବୋଲିବାକୁ ।୧।

ନ କହିବି ମନ କଥା        ଯେବେ ନ ବୁଝିଲା ବ୍ୟଥା

କରିଦେଲା ମୋତେ ସାତପର

ପୋତୁ ମୋ ହୃଦୟ ମନ        ଲୋଡ଼େନା ପ୍ରେମ-ଚନ୍ଦନ

ଭାବଗ୍ରାହୀ ନାମ ମିଛ ତାର

କି ଲାଗି ଆଶ୍ରୟ ସଖୀ କରିବି ଭୁଜ ଛାଇକୁ ।୨।



–୬–

ଦେଖାଦିଅ ଦେଖାଦିଅ ମୋ ପ୍ରାଣର ଠାକୁର
ଛୋଟ ବୋଲି ମନୁ ମତେ ନ କର ହେ ଅନ୍ତର ।୦।
କେଉଁଠି ଦେଖେ ମୁଁ ତୁମ୍ଭ
ହାତଗୋଡ଼ କିଛି ନାହିଁ
କେଉଁଠି ଦେଖେ ହସୁଛ
ଅଧରେ ମୁରଲି ବାଇ
ଏତେ ରୂପ ଏତେ ଠାଣି
ବୁଝେନା ମୋ ଅନ୍ତର
କେଉଁ ରୂପେ ପୂଜିବି ମୁଁ ପଢ଼ି କେଉଁ ମନ୍ତର ।୧।

ଫୁଲେ ଫୁଲେ ଏତେ ରଙ୍ଗ
ଏତେ ଗନ୍ଧ ଅଛ ଭରି
କଣ୍ଠେ କଣ୍ଠେ ଏତେ ଭାଷା
ଏତେ ସୁର ଦେଲ ତୋଳି
ଏ ଆକାଶ ଏ ପୃଥିବୀ ଅଟେ କେଡ଼େ ଉଦାର
ତୁମେ ତେବେ କେଉଁ ରୂପ କୁହ ମୋର ଠାକୁର ।୨।



-୭-

ମୁଁ ଯେବେ ଝୁରିଲି ଶ୍ୟାମ ପ୍ରେମ-ମଧୁକୁ
ସେ ମୋତେ କରିଲା ପର ଦେଇଗଲା ଯାତନାକୁ ।୦।

କଞ୍ଜଚରଣ ଧୋଇ ଲୋତକ ଜଳରେ
ସଜାଇଲି ଯେବେ ତାକୁ ବନଫୁଲ ମାଳରେ
ହଟିଆ ନାଗର ଶ୍ୟାମ କଲା କେତେ ହରବର
ବାରେ ନ ଘେନିଲା ମୋର ଭାବପ୍ରୀତିକୁ ।୧।

ଧୂପ ହୋଇ ଜଳିଯାଉ ଜୀବନ ତା ପାଇଁକି
ଦୀପ ହୋଇ ଯବି ଜଳି ତାର ପୂଜା ପାଇଁକି
ସେ ଯେବେ ହେବ ସନ୍ତୋଷ ଆନେ ନାହିଁ ମୋର ଆଶ
ଦିବାନିଶି ଭଜୁଥିବି ତାର ନାମକୁ ।୨।



–୮–

ବଗିଚାରେ ମୋର ସୁବାସିତ ଫୁଲ
ଗୁନ୍ଥିଅଛି ମାଳା କେତେ
କୁନିଠାକୁର ହେ ! ପିନ୍ଧାଇଦେବି ମୁଁ
ମୋର ଏଇ ଟିକି ହାତେ ।୦।

ଚନ୍ଦନ ଘୋରିଛି, ଧୂପ ସଜାଡ଼ିଛି ନଇବେଦ୍ୟ ବାଢ଼ିଦେବି
ଟିକି ମନେ ମୋର ଯେତେ କଥା ଅଛି
ସବୁ ଫିଟାଇ କହିବି
ନ ରହି ମଉନ ଦେବୁ କି ଉତ୍ତର
ରାଣ ମୋର ଦେଲି ତୋତେ ।୧।

ଯେତେ ମୁଁ ନିରେଖି ଦେଖୁଛି ପରଖି
ଦିଶୁଥାଉ ମୋତେ ନୂଆ
କି ଭାଳି ଗୋପନେ ହସୁଛୁ ମଉନେ
କଥା ନ କହୁଛୁ ଯାହା
ଟିକିପିଲା ବୋଲି କରୁ କି ବିଚାର
ସତ କରି କହ ମୋତେ ।୨।



-୯-

ମନ ମନ୍ଦିରେ ମୋର ଆସି ଗିରିଧାରୀ
ନଟବର ବେଶ ହୋଇ
ନାଚି ଢଳି ଢଳି କଞ୍ଜଚରଣ ଚାଳି
ମଧୁରେ ମୁରଲୀ ବାଇ ।୦।

ଦିବସ ରଜନୀ ବିତେ ଅକାରଣେ
ତୁମ ପଥ ଚାହିଁ ଚାହିଁ
ମଉଳି ଗଲାଣି ସୁବାସ କୁସୁମ
ଥରେ ତ ଘେନିଲ ନାହିଁ
ଜୀବନ-ପ୍ରଦୀପ ଥରି ଥରି କାନ୍ଦେ
ପୂଜାବେଦୀ ତଳେ ଥାଇ ।୧।

ମନ ପୂଜାବେଦୀ ଶିରୀହୀନ ଦିଶେ
ତୁମ ବିନା ବନମାଳୀ
ଗନ୍ଧହୀନ ହୁଏ ଅଗୁରୁ ଚନ୍ଦନ
ଅଭିଶାପେ ଯାଏ ଜଳି
ଆସ ରଙ୍ଗାଧର ମଧୁର ସ୍ୱପ୍ନରେ
ମନ୍ଦିର ଉଠୁ ଭରି ।୨।



-୧୦-

କିପରି ଡାକିଲେ ଶୁଭିବ ତୁମକୁ
କୁହ ଆହେ ଭଗବାନ
କି ରୂପେ ପୂଜିଲେ ବେଦନା ବୁଝିବ
ଦେବ ବାରେ ଦରଶନ ।୦।

କେଉଁ ପଥେ ଗଲେ ପାଇବି ମୁଁ ଖୋଜି
ଅମୁହାଁ ଦେଉଳ ପଥ
କି ସୁରେ ଗାଇଲେ ତୁମ ନାମାବଳି
ହୋଇବି ମୁହିଁ ମୁକତ
କହିଦିଅ ବାରେ କରୁଣାମୟ ହେ
ନ ରୁହ ଆଉ ମଉନ ।୧।

କି ଭୋଗରେ ତୁମେ ଲଭିବ ସନ୍ତୋଷ
ସଜାଡ଼ିବି ଭୋଗ ଥାଳି
କି ମନ୍ତ୍ରରେ ତୁମ ବନ୍ଦନା କରିବି
କେଉଁ ଦୀପାବଳି ଜାଳି
କହିଦିଅ ବାରେ କରୁଣାମୟ ହେ
ନ ରୁହ ଆଉ ମଉନ ।୨।



-୧୧-

ଶତ ଦୀପାବଳି ମନ୍ଦିରେ ଜାଳି
ପାରେନାହିଁ ତୋତେ ଦେଖି
ଶତ ନାମ ଧରି ନିତି ଡାକେ ଯେତେ
ପାଉନି ତୁମକୁ ଖୋଜି ।୦।

କେତେ ଯେ କୁସୁମ
ସୁବାସ ଚନ୍ଦନେ ସଜାଏ ତୁମରି ରୂପ
କେତେ ଶଙ୍ଖ, ଘଣ୍ଟା
ଶବଦରେ ତୋର ଆରତି କରୁଛି ଶେଷ
ଥରଟିଏ ପାଇଁ ସନ୍ତୋଷ ଲଭେନା
ହେଲ ବୋଲି ପ୍ରଭୁ ସୁଖୀ ।୧।

କେତେ ଯେ ପୁରାଣ
ପଢ଼େ ନିତି ନିତି
ଅବୁଝା ହେଉଛି ମନ
କେତେ ତୀର୍ଥ ବୁଲି ପାରୁନାହିଁ କହି
ଲଭିଲି ତୋ' ଦରଶନ
ଲାଗୁଅଛି ମତେ ଲୁଚିଛ ଦେବତା
କରିବାକୁ ମୋତେ ଦୁଃଖୀ ।୨।



-୧୨-

କୃଷ୍ଣ ନାମକୁ ନିତି ଭଜୁଥା'ରେ ମନ
　　　　　　　　କୃଷ୍ଣ ନାମକୁ ଭଜୁଥା'
ଗୋପଦାଣ୍ଡ ଧୂଳି ମଥାପରେ ବୋଳି
　　　　　　　　ମଥୁରା ଦାଣ୍ଡକୁ ଯାଆରେ ମନ ।୦।

ଗୋପୀ, ଗୋପାଳଙ୍କୁ କରି ପ୍ରାଣମିତ
　　　　　　　　ଗୋଧନ ଚରାଇ ଯାଆ
ଯମୁନା ଜଳକୁ ପାନ କରି ଥରେ
　　　　　　　　ଆନନ୍ଦରେ ବୁଲୁଥାଆ
ବନଫୁଲ ମାଳେ ସଜାଇ ଗଳାକୁ
　　　　　　　　କୃଷ୍ଣ କୃଷ୍ଣ ବୋଲୁଥାଆରେ ମନ ।୧।

ମଥୁରା ଦାଣ୍ଡରେ ପାଦ ଦେଇ ମନ
　　　　　　　　କଂସାରିକୁ ହେଜୁଥାଆ
ଯା'କର ପରଶେ ସ୍ୱରୂପ ବିକଶେ
　　　　　　　　ତା'ପରଶ ଖୋଜୁଥାଆ
ଶୟନେ, ସପନେ ଅବା ଜାଗରଣେ
　　　　　　　　କୃଷ୍ଣ ପ୍ରେମେ ମାତି ଯାଆରେ ମନ ।୨।



-୧୩-

ଜଗନ୍ନାଥେ ହୋ ଜଗନ୍ନାଥେ
ମୋ କଥା ଯିବ ପରତେ
ହାତରେ ନ ମାରି ଭାତରେ ମାରୁଛ
ପର କରିଦେଲ ମୋତେ
ବଡ଼ଖିଆ ବୋଲି ବଡ଼ ଶରଧାରେ
କିଏ କେତେ ନ ଦେଉଛି
ବଡ଼ ବଂଧୁ ବୋଲି ଦୁନିଆ ଯାକରେ
କିଏ କେତେ ନ ନେଉଛି
ଭିକ ମାଗେ ବୋଲି ହାତ ପତେଇ ମୁଁ
ମାରୁଅଛ କିବା ମୋତେ ।୧।

ତୁମ ଛଡ଼ାଫୁଲ ନିର୍ମାଲ୍ୟ ପାଇଁକି
ନୋହିଲି ମୁହିଁ ଭାଜନ
ମରଣରୁ ବଳି ଯାତନା ବଢ଼ିଲା
ଲୁହରେ ଭରେ ନୟନ
ଅନାଥ ହୋଇଲି କର୍ମକୁ ନିନ୍ଦିଲି
ଥାଉ ତୁମେ ଦୀନନାଥେ ।୨।



-୧୪-

କଷଣ ମୋ ସରିଲାନି
ମରମ ମୋ ଭରିଲାନି
ନିରିମମ ଦେବତା ହେ
ମିନତି ମୋ ଘେନିଲନି ।୦।

ସାଗରର ଯେତେ ନୀର
ନୟନରେ ଭରିଦେଲ
ସାହାରାର ଯେତେ ତୃଷ୍ଣା
ବୁକୁରେ ମୋ' ଜଗାଇଲ
ଆଶା ନାବେ ଆଶ୍ରା ଦେଇ
ଜଳଧିରୁ ତାରିଲନି ।୧।

ପାଷାଣ ପ୍ରତିମା ହରି
ପାଶୋରିଲ କିବା ଭାଳି
ଯାତନାର ଜଉଘରେ
ଦୁଃଖ ନିଆଁ ଦିଅ ଜାଳି
ଫୁଲର ମହକ ନେଇ
ଜୀବନେ ମୋ ଆସିଲନି ।୨।



-୧୪-

କାଳିଆ କାଳିଆ ମୋ ଘନ କାଳିଆ
ମୋ ଗଳାମାଳିଆ କାହ୍ନୁରେ
କେତେ ବୁଝାଇବି କେତେ ମୁଁ କହିବି
ତୁ ମୋର ଜୀବଧନରେ ।୦।

ଅବୁଝା ହୁଅନା ରାଣ ଦେଲି ତୋତେ
ବନ୍ଧା ଦେଲି ଏ ଜୀବନ
ଖେଳ ଖେଳିଲେ ତୁ କପଟିଆ କାହ୍ନୁ
ଲଭିବି ସିନା କଷଣ

କନ୍ଦାଇ କନ୍ଦାଇ ଫାନ୍ଦରେ ଜଡ଼ାଇ
ଅଭିମାନେ ଚାଲି ଯା ନାରେ ।୧।
ତୋ' ବିନା ଅନ୍ଧାର ଚଉଦିଗ ସିନା
ଆଲୋକର ଶିଖା ତୁହି
ସୁଖରେ ଦୁଃଖରେ ସାଥୀ ହେବୁ କାହ୍ନୁ
ଏତିକି ମନାସେ ମୁହିଁ
ଜଳାଇ ଛଳାଇ ପୋଡ଼ା ଜୀବନକୁ
ଲୋକହସା ଆଉ କରନାରେ ।୨।



-୧୬-

ରଥ ଚାଲେ ଘୁଁ ଚକ ଚାଲେ ଘୁଁ
ବହୁଦୂର ପଥୁ ଆସିଛିରେ ଧାଇଁ
ତୋତେ ଦେଖିବାକୁ ମୁଁ ।୦।
କାଳିଆ କାଳିଆ ମୋ ଚିକ୍‌କଣ କାଳିଆ
କଳାମୁଖ ହସ ହସ
ତୋର କଳାମୁଖ ହସ ହସ
ଫୁଲରେ ଫୁଲରେ ଫୁଲେ ସାଜି ହୋଇ
ଲଗାଉଛୁ ବସି ନାଟରେ ଲଗାଉଛୁ ବସି ନାଟ
ଭକତଜନଙ୍କୁ ନିରେଖି ଦେଖୁଛୁ
ରଥ ପରେ ବସି ତୁ ।୧।
ରହିଯା' ରହିଯା' ଟିକିଏ ରହିଯା'
ମନଭରି ଦେଖିନିଏ ତୋତେ
ମନଭରି ଦେଖିନିଏ
ଦେଇଯା ଦେଇଯା କରୁଣା ଦେଇଯା
ବୁକୁ ମୋର ଭରିଦିଏ ବୁକୁ ମୋର ଭରିଦିଏ
ପରତେ ନୋହୁଛି ଭୁଲାଣିଆ ରୂପ
ଆଉ କି ଦେଖିବି ମୁଁ ।୨।



-୧୭-

କହ ଲଳିତା: କହ ବିଶାଖା
କାହିଁଗଲେ କଳାକାହ୍ନୁ ଆଉ ନ ଶୁଭଇ ବେଣୁ
ଝୁରି ଝୁରି ମରିଲାଣି ପ୍ରିୟା ରାଧିକା ।୦।

ତମାଳ, ମାଳତୀ କୁଞ୍ଜେ ବାସହୀନା ଏଇ ସଂଜେ
ରାଧା ଗଭା ଅସଜଡ଼ା ସଜଳ ନୟନ ଭରେ
ସୁକୁମାରୀ ଅଭିମାନୀ ବ୍ରଜରସିକା ।୧।

କଳଙ୍କିନୀ ଅପବାଦେ ଗୋପରେ ନାଗରା ବାଜେ
ପ୍ରୀତିଟା ଅବୁଝା ଭାରି ନ ମାନି ବାଧା କାହାରି
କଳଙ୍କକୁ କଲାଣି ସେ କଙ୍କୁମ ଟିପା ।୨।

ନୀଳ ଯମୁନାର କୂଳେ କଦମ୍ବ, ତମାଳ ମୂଳେ
କୃଷ୍ଣ ତନୁ ଗନ୍ଧ ପାଇ ବିଭୋରେ କିଶୋରୀ ରାଈ
ନିତି ସଂଜେ ସାଜେ ସିଏ ଅଭିସାରିକା ।୩।



-୧୮-

ମୁଁ ଦେବି ତୋତେ ଅଗୁରୁ, ଚନ୍ଦନ
ତୁ ଦବୁ ମିଠା ହସ କାଳିଆରେ
ତୁ ଦବୁ ମିଠା ହସ
ମୁଁ ଗାଉଥିବି ତୋ ଭଜନ ନିତି
ତୁ ହୋଇବୁ କି ତୋଷ କାଳିଆରେ
ତୁ ହୋଇବୁ କି ତୋଷ ।୦।
ମୁଁ ହେବି ତୋର ସୁଦାମା, ସୁବଳ
ତୁ ହବୁ କଳାମାଣିକ
ଯମୁନା କୂଳରେ କଦମ୍ବ ମୂଳରେ
କରିବୁ ତୁ କେତେ ନାଟ କାଳିଆରେ
କରିବୁ ତୁ କେତେ ନାଟ ।୧।
ମୁଁ ଖୋଇଦେବି ସରଳବଣି
ଖୋଲିଦେବୁ ତୋର ମୁଖ
ତୋ ଶ୍ରୀମୁଖେ ଦେଖି ଚଉଦ ବ୍ରହ୍ମାଣ୍ଡ
ଲଭିବି ମୁଁ ସବୁ ସୁଖ କାଳିଆରେ
ଲଭିବି ମୁଁ ସବୁ ସୁଖ କାଳିଆରେ
ଲଭିବି ମୁଁ ସବୁ ସୁଖ ।୨।
ମୁଁ ହେବି ତୋ ପାଦର ନୂପୁର
ରୁଣୁଝୁଣୁ ବାଜୁଥିବି
ଗାଈଗୋଠ ନେଇ ଗୋପ, ବୃନ୍ଦାବନେ
ମୋ ସାଥେ ଖେଳିବୁ ତୁହି
ମୀରାବାଈ ହୋଇ କହୁଥିବି ମୁହିଁ
ମତେ ପାଶେ କାହ୍ନୁ ରଖ କାଳିଆରେ
ମତେ ପାଶେ କାହ୍ନୁ ରଖ ।୩।



-୧୯-

ମୁହଁଟି ସିନା କାଳିଆ କାଳିଆ
ହସଟି ତୋର ମହୁଆ ମହୁଆ
ତୁ ହସିଲେ ଦୁନିଆ ହସେ
ତୁ ରୁଷିଲେ ଦୁଃଖ ବରଷେ
ତୁ ଭାରି ଭଲ ଜଗାରେ ମୋର
ନିଇତି ଏମିତି ହସୁଥା ହସୁଥା ।୦।

ତୋ ଘରେ କୁଣିଆଁ ହେବି ଯେବେ ଜଗା
ଦବୁ କି ଅଭଡ଼ା, ଡାଲି
ପାଟ, ପୀତାମ୍ବରୀ ନ ଦେଲେ ନ ଦବୁ
(ଦେବୁ) ଚିରାକନା ଖଣ୍ଡେ ଖାଲି
(ମୁଁ) ଶରଧାରେ ଯେବେ ଖୁଦଭଜା ଦେବି
କହିବୁ କି ଭାରି ବଢ଼ିଆ ବଢ଼ିଆ
ଆହା ବନ୍ଧୁ ମୋର ତୁ ନୀଳାଚଳିଆ ।୧।

ତୋ ରଥେ ସାରଥି ନ ହେଲେରେ ନାହିଁ
ହେବି ମୁଁ ରଥ ଦଉଡ଼ି
ଅଗୁରୁ ଚନ୍ଦନ ହେବାକୁ ଚାହେଁନା
ହେବି ବଡ଼ଦାଣ୍ଡେ ଧୂଳି
ଶରଧାରେ ଯେବେ ତୋ ପାଦ ଛୁଇଁବି
ଡାକିବୁ କି ସାଥୀ ଚାଲିଆ ଚାଲିଆ
ଆହା ବନ୍ଧୁ ମୋର ନୀଳାଚଳିଆ ।୨।



-୨୦-

ମୁଁ ହେବି ତୋହର ମୟୂରଚନ୍ଦ୍ରିକା
ମୁଁ ହେବି କାଛଁଚମାଳି
ମୁଁ ହେବି ତୋହର ବନଫୁଲମାଳ
ନାଚିବୁ ତୁ ଢଳିଢ଼ଳି
ଆରେ ମୋ କଳାକାହ୍ନୁ ନାଚିବୁ ତୁ ଢଳିଢଳି ।୦।
ମୁଁ ହେବିରେ କାହ୍ନୁ ପ୍ରୀତିର-କଦମ୍ବ
କରିବୁ ତୁ ବାସ ଚୋରି
ଯମୁନା ଜଳରେ ଷୋଡ଼ଶ ଗୋପୀଏ
ଲାଜେ ଯାଉଥିବେ ସରି
ତମାଳ, ମାଳତୀ କୁଞ୍ଜଟିଏ ହେବି
ଖେଳିବୁ ତୁ ପ୍ରୀତି-ଦୋଳି
ତୋ ପରଶ ପାଇ ହସୁଥିବି ମୁହିଁ
ଜୀବନ ଯିବ ମୋ ଭରି ଆରେ କଳାକୃଷ୍ଣ ।୧।
ମୁଁ ହେବିରେ ନଟ ଯାମଳା, ଶକଟ
ତୁ ହଟକୂଟ ଦେଖାଇବୁ
ଯଶୋଦା ମାଆରେ ମିଛି ବାହାନାରେ
ଛଳାଇ ଜଳାଉଥିବୁ
ମୁଁ ହୋଇବି ପଛେ ଗୋପଦାଣ୍ଡ-ଧୂଳି
ତୁ ଧୂଳିଘର ଗଢୁଥିବୁ
ତୋ ସ୍ନେହ-ପରଶେ ହୋଇବି ଅମର
ଜୀବନ ଯିବ ମୋ ଭରି ଆରେ କଳାକୃଷ୍ଣ ।୨।



–୨୧–

ମୁଁ ଡାକିଲେ ତୋତେ କାଳିଆ ବୋଲିରେ
ତୁ ଧାଇଁ କି ଆସିବୁ ଆହା
ତୁ ଡାକିଲେ ମତେ ଧାଇଁଯିବି ଜଗା
ଯେଉଁଠି ପଛେ ତୁ ଥା' ।୦।
ତୁ କହିଲେ ମୁଁ ଗିରି ଲଂଘିଯିବି
ସାଗରେ ବାନ୍ଧିବି ଭେଳା
ନିରିଜନ ମରୁ ବୁକୁରେ ଝରଣା
ଝରିବ ଶୁଣି ତୋ ନାଆଁ
ତୁ ଯେବେ କାଳିଆ କୋଳେଇ ନବୁରେ
ଶିଆଳି ଲଟା ମୁଁ ହୋଇ
ଶ୍ରୀଅଙ୍ଗରେ ତୋର ଛନ୍ଦି ହୋଇଯିବି
ସେଇ ତ ମୋ ସୁଖ ଆହା ।୧।
ତୋ ପାଇଁ ମୁଁ ଦାଣ୍ଡଧୂଳି ହୋଇ
ତୋ ବାଟକୁ ଚାହିଁଥିବି
ରଥ ଚଢ଼ି ଯେବେ ଆସିବୁ ଜଗାରେ
ପାଦତଳେ ଲୋଟିଯିବି
ତୁ ଯେବେ କାଳିଆ ଅତି ସରାଗରେ
ଥରେ ଦେବୁ ଖାଲି ଛୁଇଁ
ସରଗର ସୁଖ କି ହୋଇବ ମୋର
ସେଇ ତ ମୋ' ସୁଖ ଆହା ।୨।



-୨୨-

ଚକା ଚକା ଚକା ଆଖିରେ ତୋର
ନାଲି ନାଲି ଓଠେ ମିଠା ହସ ସୁନ୍ଦର
ଭାରି ବଢ଼ିଆ ହୁଁ ଉଁ ମନରସିଆ
ପାଗଳ କରିଛି ପରା ଏ ଦୁନିଆ ।୦।

ବଡ଼ଦାଣ୍ଡରୁ ତୋର ମୋ ମନ-ଦାଣ୍ଡ ଯାଏ
ତୋ ପ୍ରୀତିର ନନ୍ଦିଘୋଷ ନିତି ଆସେ ନିତି ଯାଏ
କେତେବେଳେ କଳା କଳା ମେଘ ଭଳି
ତୁ ଭାରି ମନୁଆଁ
କେତେବେଳେ ଛଳ ଛଳ ଝରଣାର
ମଧୁଗୀତି ରସରସିଆ
ତୁ ଚାହିଁଲେ ସିନ୍ଧୁନୀରେ ଭାସଇ ପଥର
ପୁଣି ବୁଡ଼ଇ ଭେଳା ।୧।
ନୀଳାଚଳ ଧାମର ମୋ ଘର ଅଗଣା ଯାଏଁ
ପ୍ରୀତିର ଶିଆଳିଲଟା ଝୁମି ଝୁମି ଲମ୍ବିଯାଏ
କେତେବେଳେ ଛଳଛଳ ଅଦିନ ଶ୍ରାବଣ ଭଳି
ଭାରି ମିଛୁଆ
କେତେବେଳ ମିଠା ମିଠା ଫଗୁଣ ଭଳି
ଭାରି ମନୁଆଁ
ତୁ ଚାହିଁଲେ ପଙ୍ଗୁ ଲଂଘିଯାଏ ପରବତ
ପଥର ହୁଏ ଅବଳା ।୨।



-୨୩-

ଜହ୍ନ ହସେ ଖିଲିଖିଲି ସଙ୍ଗାତ ଲୋ
ଜହ୍ନ ହସେ ଖିଲିଖିଲି
କାଳିଆ କାଳିଆ ଚିକ୍କଣ କାଳିଆ
ଆସୁଅଛି ଝୁଲି ଝୁଲି
ନନ୍ଦିଘୋଷ ରଥ ଚଢ଼ି ରଜାବେଶେ ସାଜି
ବରଷକେ ଥରେ ଆହା କାଳିଆ ଆସୁଛି ରାଇଜ ବୁଲି ।୦।
ମଲ୍ଲୀଫୁଲ ଦିଶେ ତୋରା ସଙ୍ଗାତ ଲୋ
ମଲ୍ଲୀଫୁଲ ଦିଶେ ତୋରା
ଚେହେରାଟି ତାର ଅସୁନ୍ଦର ସିନା
ସେ ତ ରସିକନାଗର ପରା
ତେରେଛି ତେରେଛି ଚାହିଁ ମନକୁ ନେଉଛି ମୋହି
ଏ ଜୀବନ-ମନ-ପରାଣ ସବୁ ତା' ପାଶେ ବନ୍ଧା ରଖିଲି ।୧।
ଉଡ଼ିଯାଏ ଗେଣ୍ଡାଳିଆ ସଙ୍ଗାତଲୋ
ଉଡ଼ିଯାଏ ଗେଣ୍ଡାଳିଆ
ସେ ଜଗମୋହନ ଜଗତ ଜୀବନ
ତା'ପାଶେ ସରମ କିଆଁ
ମନ୍ଦ ମନ୍ଦ ହସ ହସି ସୁଧା ଦେଉଛି ବରଷି
ଏତିକି ମାଗୁଣି ସ୍ୱର୍ଗଦ୍ୱାରେ ତା'ର ଚିତାରେ ଜଳିବି ବୋଲି ।୨।



-୨୪-

ନୂପୁର କାହିଁକି ମୁଁ ବାନ୍ଧିବି
ଘୁଙ୍ଗୁର ତାଳେ କିଆଁ ନାଚିବି
କାଳିଆ କଦମ୍ବମୂଳିଆ ବଡ଼ ମିଛୁଆ
ମତେ ଦଗା ଦେଲା ହଁ ଦଗା ଦେଲା ।୦।
କଳାମେଘି ପାଟ ଆଉ ପିନ୍ଧିବିନି
ଗୋଧନ ବାହୁଡ଼ା ପଥ ଚାହିଁବିନି
ଆଖିରେ କଜଳ କଳା ନାଇବିନି
ଅଭିସାରିକା ବେଶ ସାଜିବିନି
ମତେ ଭୁଲି କା'ପାଶେ ରାତିଟା ସେ ପୁହାଇଲା
କଳାକାହ୍ନୁ ମତେ ଭୁଲିଗଲା ।୧।
ଯମୁନା ଜଳକୁ ଆଉ ମୁଁ ଯିବିନି
ମୁରଲୀ ସ୍ୱନ କାନେ ମୁଁ ଶୁଣିବିନି
ରାଧା ତମାଳରେ ଗଭା ସାଜିବିନି
ମୟୂରର ନାଚ ଦେଖି ଝୁରିବିନି
ପୀରତି ବାହାନା କରି ଅପବାଦ ଦେଇଗଲା
କଳାକାହ୍ନୁ ମତେ ଭୁଲିଗଲା ।୨।



-୨୪-

ତୋ ମଲ୍ଲୀଫୁଲିଆ ହସ
ଆଉ ଚନ୍ଦ୍ରଉଦିଆ ମୁହଁ
ମନେପଡ଼େ ରାତିଦିନ
ତତେ ଝୁରୁଚି ନିତି ମୋ ମନ
ଜଗାରେ ଝୁରୁଚି ନିତି ମୋ ମନ ।୦।
ମେଘଠାରୁ କଳା ତୋ ଦେହର ରଙ୍ଗ
ପୀତବସନରେ ଝଟକେ
ଚକା ଚକା ଆଖିର କୁହୁକ ଚାହାଣୀ
ଛାତିରେ ଛନକା ପଶେ
କେରି କେରି ତୋର ଦୟଣାର ମାଳ
ଭୁରୁ ଭୁରୁ ଗନ୍ଧଚନ୍ଦନ
ମତେ ପାଗଳ କରେ ନିଶିଦିନ ।୧।
ସାଗରଠୁ ବଡ଼ ଗଭୀର ତୋ ମନ
ସାରା ଜଗତକୁ ନିଜର ମଣୁ
ଭାବହୀନ ତୋର କଳାବଦନରେ
ଭାବ ବୁଝି କେ ପାରିବ ସବୁ
ନାଲି ନାଲି ଓଠେ ଅଧା ଚାନ୍ଦ ହସ
କିଣନିଏ ସବୁରି ମନ
ମତେ ପାଗଳ କରେ ନିଶିଦିନ ।୨।



-୨୭-

ଷାଠିଏ ପଉଟି ଖାଉ
ଜଗା ଷାଠିଏ ପଉଟି ଖାଉ
ମୋ ଶାଗ ପଖାଳରୁ ଟିକିଏ ଚାଖିଲେ
ତୋ ମନ ଛାଡ଼ିବନି ଆଉ
ଜଗାରେ. ତୋ ମନ ଚାଡ଼ିବନି ଆଉ
ରତ୍ନ ସିଂହାସନେ ବସିଚୁ ଅଷ୍ଟ ଅଳଙ୍କାରେ ସାଜୁଛୁ
ଦେବଦାସୀ ନାଚ ଦେଖୁଚୁ ମନ ଫୁଲାଣିଆ ହସୁଛୁ
ମାଟି କୁଡ଼ିଆରେ ଦିନଟେ ରହିଯା
ତୋ ପାଦ ଫେରିବନି ଆଉ
ମୋ ଜଗାରେ ବଡ଼ଦେଉଳେ ଯିବୁନି ଆଉ ।୧।

ରତ୍ନ ପଲଙ୍କରେ ଶୋଉଚୁ ଦାସଦାସୀ ସେବା ପାଉଛୁ
ପାଟ ପୀତାମ୍ବରୀ ପିନ୍ଧୁଚୁ ଭକ୍ତଙ୍କୁ କଣେଇ ଦେଖୁଛୁ
ଛିଣ୍ଡା ହେଁସରେ ତୁ ରାତିଟେ ଶୋଇ ଯା
ଏ ମଜା ପାଇବୁ କାହୁଁ
ମୋ ଜଗାରେ ଦୀନବନ୍ଧୁ ପରା ତୁ ବୋଲାଉ ।୨।



-୨୭-

କାନିରେ ପଡ଼ିଲା ଗଣ୍ଠି କଳାକାହ୍ନୁ
କାନିରେ ପଡ଼ିଲା ଗଣ୍ଠି
ଯମୁନା କୂଳକୁ ନ ଆସିବୁ ଯେବେ
ତୋଅର ମୋଅର କଟି ।୦।
ଆକାଶେ ପୂନେଇଁ ଜହ୍ନ ଚିତ୍ତଚୋର
ଆକାଶେ ପୂନେଇଁ ଜହ୍ନ
ଗୋପ ବୃନ୍ଦାବନ ଗୋପାଳୁଣୀ ହୋଇ
ରାସ ରଚିବାକୁ ମନ ଚିତ୍ତଚୋର
ରାସ ରଚିବାକୁ ମନ
ମୁରଲୀ ବାଇ ଶିଖୀପୁଚ୍ଛ ନାଇ ନ ଆସିବୁ ଯେବେ
ତୋଅର ମୋଅର କଟି ।୧।
ଉଡ଼ିଯାଏ ଗେଣ୍ଡାଳିଆ ମୋହନହେ
ଉଡ଼ିଯାଏ ଗେଣ୍ଡାଳିଆ
ସଂଜ ନଇଁଲାଣି ତୋ ବାଟ ଚାହିଁ
ଝୁରୁଚି ବ୍ରଜରସିକା ମୋହନ ହେ
ଝୁରୁଚି ବ୍ରଜରସିକା
ନଟବର ବେଶେ କେଳିକୁଞ୍ଜକୁ ନ ଆସିବୁ ଯେବେ
ତୋଅର ମୋଅର କଟି ।୨।



-୨୮-

କଦ୍ବବଟ ମୂଳିଆ ସେ ଜଗାକାଳିଆ ଲୋ
ଜଗାକାଳିଆ
ସବୁ ଜାଣି ଅଜଣା ସେ ଏଡ଼େ ଛଳିଆ ଲୋ
ଏଡ଼େ ଛଳିଆ ।୦।
ହାତ ନାହିଁ ଦିଏ ଆହାର ଯୋଗେଇ
ସାରା ଦୁନିଆକୁ ପରା ସେ ସାରା ଦୁନିଆକୁ ପରା
ଗୋଡ଼ ନାହିଁ ଭ୍ରମେ ଚଉଦବ୍ରହ୍ମାଣ୍ଡ
ଦିଏନା କାହାକୁ ଧରା ସେ ଦିଏନା କାହାକୁ ଧରା
ମହୋଦଧି କୂଳିଆ ସେ ଚକାଡୋଳିଆ ଲୋ
ସବୁ କରି ପୁଣି କରାଉଥାଏ ସେ ଏଡ଼େ ଛଳିଆ
ଲୋ ଏଡ଼େ ଛଳିଆ ।୧।
କଳା ମୁଖେ ତାର ମିଠା ମିଠା ହସ ଭୁବନମୋହନ ରୂପ
ଲୋ ଭୁବନମୋହନ ରୂପ
ଦେଖିଦେଲେ ଥରେ ସେ ରୂପ ନୟନେ ହରଇ ପରାଣୁ ଦୁଃଖ
ଲୋ ହରଇ ପରାଣୁ ଦୁଃଖ
ବଡ଼ ନଟକୁଟିଆ ସେ ନୀଳାଚଳିଆ ଲୋ
ନୀଳାଚଳିଆ
ସୁଖର ସାଥୀ ସେ ଦୁଃଖର ସାଥୀ ସେ
ବନ୍ଧୁ କିଏ ତା ଭଳିଆ ।୨।



–୨୯–

ଦେଖିବୁ ଆ ସାଥୀ ଥରେ ମୋ କଳାମାଣିକକୁ
ସେ କେମିତି ଡରୁଅଛି ଆଉ ଯମୁନା ଯିବାକୁ
ଆରେ ଆ ସାଥୀ ଆ
କାଳିଆସୁନାକୁ ଦେଖିବୁ ଆ ।୦।

ସେ ଭୁଲିଛି ଗୋପଦାଣ୍ଡ ତମାଳ, ମାଳତୀ କୁଞ୍ଜ
ସେ ଭୁଲିଛି ଗାଈଗୋଠ ଗୋଧନ ବାହୁଡ଼ା ସଂଜ
ସେ ଭୁଲିଛି ଅଭିସାରିକା ରାଧାର ପ୍ରୀତିକୁ
ସେ କେମିତି ଡରୁଅଛି ବଇଁଶୀ ବଜେଇବାକୁ
ଆରେ ଆ ସାଥୀ ଆ
ନଟକୂଟିଆକୁ ଦେଖିବୁ ଆ ।୧।

ବଡ଼ଦେଉଳରେ ବସିଚି ସିଏ ଚକା ଚକା ଆଖି ମେଲି
ଭକତ ଗହଳେ ମଉଜ କରୁଛି ଯଶୋଦା ମାଆକୁ ଭୁଲି
ଗୋପ ବୃନ୍ଦାବନ ତା ପାଇଁ ସପନ ଓହ୍ଲାଇଛି ବଡ଼ଦାଣ୍ଡକୁ
ସେ କେମିତି ଡରୁଅଛି ଲବଣୀ ଚୋରେଇବାକୁ
ଆରେ ଆ ସାଥୀ ଆ
କଳାବଦନକୁ ଦେଖିବୁ ଆ ।୨।



—୩୦—

ଝୁଲି ଝୁଲି କାଳିଆ ଆସୁଛି ଝୁଲି
ଢଳି ଢଳି କାଳିଆ ଆସୁଛି ଢଳି
ଦେଉଳୁ ବାହାରି ବଡ଼ଦାଣ୍ଡେ ଆସି
ବୁଲିବ ସେ ମନଖୋଲି ।୦।
ତା ପାଇଁକି କିଛି ନାହିଁ ଆକଟ
ଆଜି କାଳିଆର ଗୁଣ୍ଡିଚା ଯାତ
ଶ୍ରୀକ୍ଷେତ୍ରରେ ଆଜି ଭାରି ଗହଳି
ଦେଖିବା ପାଇଁକି ଜଗାର ନାଟ
ବାଙ୍କ ଚାହାଣୀରେ କଣେଇ ଦେଖୁଛି
କିଏ ସେ କଅଣ କରୁଛି ବୋଲି ।୧।
ସବୁ ଭାଗ୍ୟଡୋରି ତା ହାତେ ଛନ୍ଦା
ତା ରଥଦଉଡ଼ି ଭକ୍ତ ପାଶେ ବନ୍ଧା
ଭବଜଳେ ସିନା ସିଏ ନାଉରୀ
ବଡ଼ଦାଣ୍ଡେ ଖେଳେ ଚକାଭଉଁରୀ
ଦେଖୁଛି ନିରେଖି ନବ ସେ ପରଖି
ଭେଦଭାବ ସବୁ ଯାଇଛି ଭୁଲି ।୨।



—୩୧—

ତୁ ବସିଛୁ ନନ୍ଦିଘୋଷେ ମୁଁ ଠିଆ ବଡ଼ଦାଣ୍ଡେ
ତୁ ହସୁଛୁ ଭକ୍ତମେଳେ ମୁଁ କାନ୍ଦୁଛି ଭାବଭୋଳେ
କାଳିଆରେ ମୋ ଜଗାକାଳିଆରେ
ସବୁକିଛି ଭୁଲିଯାଏ ତୋ କଳାବଦନକୁ ଚାହିଁଦେଲେ।୦।

ରଥ ପରେ ବସି ମଉଜ କରୁଛୁ ଭକ୍ତଟାଣେ ରଥ ଦଉଡ଼ି
କଣେଇ ଚାହୁଁଛୁ ମୁରୁକି ହସୁଛୁ ରଥ ଚାଲେ ଘିଡ଼ିଘିଡ଼ି
ଦୁଃଖ ତୁ ନଉଛୁ ସୁଖ ତୁ ବାଣ୍ଟୁଛୁ
କାଳିଆରେ ମୋ କାଳିଆ
ବରଷକେ ଥରେ ବଡ଼ଦାଣ୍ଡେ ଆସି
ଲୀଳା କରୁ ଭକ୍ତମେଳେ ।୧।

ଘଣ୍ଟ ଘଣ୍ଟା ତାଳେ ନାଚନ୍ତି ସଭିଏଁ ଭକତି ପ୍ରେମର ଭୋଳେ
ଚକା ଚକା ଆଖି ମେଲି ତୁ ଦେଖୁଛୁ ପାପୀ-ତାପୀ-ଧନୀ-ଗରିବରେ
ତୋ ମାୟା ତୁ ଜାଣୁ ତୋ ଖେଳ ତୁ ଜାଣୁ
କାଳିଆରେ ମୋ କାଳିଆ...
କିଏ ସେ ବୁଝିବ ମନକଥା ତୋର
ଅବୁଝା ତୁ ପରା ସଂସାରରେ ।୨।



-୩୭-

ରଥ ଯାଏ ଗଡ଼ି ଗଡ଼ି ଲୋ
ରଥ ଯାଏ ଗଡ଼ି ଗଡ଼ି
ଝୁଲି ଝୁଲି ଝୁଲି ଆସୁଚି କାଳିଆ
ପହଣ୍ଡି ବିଜେ କରି ଲୋ
ତାକୁ ପଣ୍ଡାଏ ଧରନ୍ତି ଭିଡ଼ି ।୦।
ସାଥୀ କରିଅଛି ଭଉଣୀ ସୁଭଦ୍ରା ବଳିଆ ଭାଇ କି
ଏଣେ ଲକ୍ଷ୍ମୀଙ୍କର ମୁହଁ ରଙ୍ଗା ଲୋ
ଲକ୍ଷ୍ମୀଙ୍କର ମୁହଁ ରଙ୍ଗା
ଦେଖ ତାର ଛଇକୁ ଦେଖ ତାର ରୂପକୁ
କେହି କେ ପାରିବ ଭୁଲି ଲୋ ତାକୁ କେହି କେ ପାରିବ ଭୁଲି ।୧।
ଗମ୍ଭୀରା ଭିତରେ ପଶି ପଶି ଜଗା
ମନଟା ଯାଇଛି ଚିଡ଼ି
ରଥ ପରେ ବସି ହୁଏ କେତେ ଖୁସି
ଭକତେ ନିଅନ୍ତି ଭିଡ଼ି ଲୋ
ଦେଇ ହରିବୋଲ, ହୁଳହୁଳି
ଦେଖ ତାର ଠାଣିକୁ ଦେଖ ତା ଚାହାଣୀକୁ
ହୃଦୟ ଦଉଛି ଘାରି ଲୋ ହୃଦୟ ଦଉଛି ଘାରି...।୨।



—୩୩—

ମତେ କରି ଦେ କରି ଦେ ଅନ୍ଧରେ କଳାଗୋବିନ୍ଦ
ଦିବାନିଶି ଖାଲି ଦେଖୁଥିବି ନେତ୍ରେ
(ତୋ) କଳା କଳା ମୁହଁ ଚାନ୍ଦରେ କଳା ଗୋବିନ୍ଦ ।୦।

ତୁ ମତେ ଆଉ ଠକି ପାରିବୁନି ଦଶ ଅବତାର ଦେଖାଇ
ତୁ ମତେ ଆଉ ଠକି ପାରିବୁନି ମାୟାରେ ନିତି ଭୁଲେଇ
ମୁଁ ଦେଖୁଥିବି ମୋ ଅନ୍ଧ ନୟନେ
କଳା କଳା ଏ ଜଗତରେ କଳା ଗୋବିନ୍ଦ ।୧।

ତୋ କଳାରେ ପଛେ କଳଙ୍କିନୀ ହେବି ତତେ ଭଲପାଉଥିବି
କରୁଣା ତୋର ଊଣା ହେଉ ପଛେ ତୋ ଭଜନ ଗାଉଥିବି
ମୁଁ ଦେଖୁଥିବି ମୋ ଅନ୍ଧ ନୟନେ
ତୁ ମୋ ପୂନେଇଁ ଚାନ୍ଦରେ କଳାଗୋବିନ୍ଦ ।୨।



—୩୪—

ଅଭାବୀ ସଂସାରେ ଆଜି ତୁ ଅତିଥିରେ
କି ଦେବି ତତେ କାଳିଆ
ଭାବି ମୁଁ ପାରେନା ରେ ।୦।

ଭାତ ଥିଲେ ଲୁଣ ନାଇଁ ଲୁଣ ଥିଲେ ତେଲ
ତତେ ଚରଚିବା ପାଇଁ ନାହିଁ ମୋର ବଳ
ଛାଠିଏ ପଉଟିଖିଆ ସଂସାରର ରଜା
ତତେ କିବା ଅପୂରୁବ କ୍ଷୀରି, ପୁରି, ଖଜା
ମୋ ପେଜ, ତୋରାଣି କେମିତି ଦେବିରେ
ମନ ମୋର ମରିଯାଏ ଲାଜରେ ।୧।

ଜନମ ଦେଇଛୁ ସିନା କରମ ତ ମୋର
ମୋ କରମ ଭୋଗୁଛି ମୁଁ ନାହିଁ ଦୋଷ ତୋର
ଭଙ୍ଗା କୁଡ଼ିଆ ମୋ ହସେ ଆଜି ତତେ ପାଇ
କି କହିବି କହ ପ୍ରଭୁ. ସବୁ ଜାଣୁ ତୁହି
ମୋ ଛିଣ୍ଡା କନ୍ଥାରେ ବସି ହସୁଛୁ ରେ
ମନ ମୋର ମରିଯାଏ ଲାଜରେ ।୨।



—୩୫—

ସ୍ୱର୍ଗଧାମ ମୋର ଶେଷ ଠିକଣା
ଛ'ଖଣ୍ଡ କାଠ ମୋ ଶେଷ ବିଛଣା ।
ବିଦାୟ ଦିଅ ମୋ ଭାଇ, ବନ୍ଧୁ, ପରିଜନ
ଯାଉଅଛି ମୁହିଁ ଚାଲି ଆଜି ଶମଶାନ
ସେଠି ନାହିଁ ଜାତିଭେଦର ବାରଣ
କଳା, ଗୋରା, ଧନୀ, ଗରିବ ସମାନ
ଶାନ୍ତିରେ ମୁଁ ଶୋଇଯିବି ମତେ କରନା ମନା ।୧।

ଜୀବନଟା ସାରା ମିଛ ମାୟାରେ ବୁଡ଼ି
ଅଜ୍ଞାନୀ ମୁଁ ଯାଇଅଛି ସୁପଥ ଛୁଡ଼ି
ବିଚାର କରିବାକୁ ମୋ ପାପପୁଣ୍ୟ
ସମୟ ମୁଁ ପାଇନାହିଁ ଏତେ ଅଧମ
ନିରୋଳାରେ ତା କୋଳେ ହିସାବ କରିବି ସିନା ।୨।



—୩୬—

ହେ ବନ୍ଧୁ, କୃପାସିନ୍ଧୁ
ଦିଅ ହେ ବିଦାୟ
ବିଷ୍ଣୁପୁରେ ଦେବ ସ୍ଥାନ
କରୁଛି ବିନୟ ।୦।

ମଣିଷ ଜନମ ଲଭି ମୁଁ କୁକର୍ମ
କରିନାହିଁ ବୋଲି କହୁନି
ଧର୍ମପଥ ଛାଡ଼ି ଅବାଟରେ କେବେ
ଯାଇନାହିଁ ବୋଲି କହୁନି
ମୋ ପାପ ପୁଣ୍ୟର ସାକ୍ଷୀ ତୁମେ ବନ୍ଧୁ
ମାନିନେବି ତୁମ ରାୟ ।୧।

ଆର ଜନମରେ ବଡ଼ ଦେଉଳରେ
ଦେବଦାସୀଟିଏ ହୋଇବି
ଅବା ଶୁକପକ୍ଷୀ ହୋଇ ନାମାବଳୀ
ଦିନରାତି ବସି ଗାଇବି
ଏତିକି କାମନା କରିବ ପୂରଣ
ଦିଅ ବନ୍ଧୁ ହେ ଅଭୟ ।୨।



-୩୭-

ଜୀବନ-ପ୍ରଦୀପ ଲିଭି ଲିଭି ଆସେ
ବହୁଅଛି ଅଣଚାଶୀ କାଳିଆରେ
ଶେଷବେଳେ ସତେ ମୋ ପାଶରେ ରହି
ଅମୃତ ଦେବୁ ବରଷି ।୦।

ସବୁ ତ ଦେଇଛୁ ଜୀବନରେ ଭରି
ମୁଁ ସିନା କହୁଛି ଦେଇନାହୁଁ କିଛି
ମୋ କର୍ମଫଳ ମୁଁ ଭୋଗୁଅଛି ନିତି
ମିଛେ ସିନା ତୋର ଦୋଷ ଦେଉଅଛି
ତୋ ମହତପଣ ବୁଝେ ଯେଉଁ ଜନ
ଜୀବନରେ ହୁଏ ଖୁସି ।୧।

ଯଉବନ କାଳେ ଗରବେ ମାତିଛି
ସାରା ଦୁନିଆକୁ ମଣିଛି ମୁଁ ହୀନ
ଯିବାବେଳେ ଆଜି କରୁଛି ହିସାବ
ମୋର ଭଲମନ୍ଦ ଆଉ ପାପପୁଣ୍ୟ
ସୁଖଦୁଃଖ ପାଇଁ ତତେ ଦାୟୀ କରି
ମଣୁନି ନିଜକୁ ଦୋଷୀ ।୨।



—୩୮—

ହେ କଳାଭଅଁର ମୋ ରସସାଗର
ମୁଁ ଫୁଲ ହେଲେ ତୁ ମଧୁଚୋର ଭଅଁର ।୦।

ଉଡ଼ି ଉଡ଼ି ଫୁଲେ ଫୁଲେ
ଭଲମନ୍ଦ ବୁଝି ଭଲେ
ମଧୁ ନେଉ ତୁ ଚୋରେଇ
ଆଦରେ ଗଳାରେ ନାଉ
(ଅବା) ହତାଦରେ ଫିଙ୍ଗିଦେଉ
ଭାଗ୍ୟର ଦୋଷ ଦେଇ

ହେ କଳାନାଗର ମୁଁ ତଟିନୀ ହେଲେ ତୁ ସାଗର ।୧।
ସାରା ଜଗତର ନାଥ
ଭକତ ମନର ମିତ
ତୋ ପରିକା କିଏ ହେବ
ଦୁଃଖ ନେଇ ସୁଖ ଦେଉ
ହସ ଦେଇ ଲୁହ ନେଉ
ଲଗାଇଦେଉ ତୁ ଭାବ
ହେ ପ୍ରେମସାଗର ମୁଁ ଭାବ ହେଲେ ତୁ ଭାବନା ମୋର ।୨।



—୩୯—

ଆରେ ଆ ମୋର କଳାକାହ୍ନୁ
ମୋ କୋଳକୁ ଫେରିଆ'
ପଥର ଦେଉଳେ ପଥର ହେଲୁ ତୁ
କାହ୍ନୁଛି ଯଶୋଦା ମାଆ ।୦।

ସାରା ବୃନ୍ଦାବନେ ଖୋଜି ମୁଁ ଆସିଲି
ଖୋଜିଲି ଯମୁନା କୂଳେ
ଗୋ'ଧନ ବାହୁଡ଼ା ପଥକୁ ଚାହିଁଲି
ଫେରିବ ମୋ ଧନ କାଳେ
ଆରେ ଆ' ମୋ କଳାକାହ୍ନୁ ଗୋପଦାଣ୍ଡେ ଫେରି ଆ
ଗମ୍ଭୀରା ଭିତରେ କିମ୍ପାଇ ଲୁଚିଛୁ
ରୁଷିଥିଲେ ଭୁଲିଯା ମୋ ଧନ
ରୁଷିଥିଲେ ଭୁଲି ଯା ।୧।

ସରଳବଣୀକି ତୁଚ୍ଛ କରିଦେଇ
ଷାଠିଏ ପଉଟି ଖାଉ
ରତ୍ନ ସିଂହାସନେ ରଜା ପରି ବସି
କି ସୁଖ ସତେ ତୁ ପାଉ

ଆରେ ଆ' ମୋ କଳାକାହ୍ନୁ

ମା' କୋଳେ ଫେରିଆ
ମାଆର ମମତାଠାରୁ କିବା ବଡ଼
ଅଛି ଏ ଜଗତେ ଆହା ମୋ ଧନ
ଅଛି ଏ ଜଗତେ ଆହା ।୨।



-୪୦-

ତୁ ନଉକା ତୁ ନାଉରୀ
ତୁ ତଟିନୀ ତୁ ଭଉଁରି
ତୁ ଜଗିଥାଉ ଘାଟ ମୋ କଳାମୁକୁନ୍ଦ ।୦।

ତୁ ଜନମ ତୁ ମରଣ ତୋ ହାତରେ ଭାଗ୍ୟଲେଖା
ସବୁଠାରେ ଥାଉ କେଉଁଠି ନ ଥାଉ
ଶୂନ୍ୟପୁରୁଷ (ତୁ) ଅଦେଖା
ତୁ ଉଆଁସ ତୁ ଅନ୍ଧାର
ତୁ ପୁନେଇଁର ଚାନ୍ଦ ମୋ କଳାମୁକୁନ୍ଦ ।୧।

ତୁ କରମ ତୁ ଧରମ ଡାକିନେଉ ହାତଠାରି
ବାଟରେ ଯାଏ କି ଅବାଟରେ ଯାଏ
ଭାବେ ମୁଁ କରୁଛି ବୋଲି
ତୁ ସାଗର ତୁ ଲହରୀ
ବୁଝି ନ ପାରେ ତୋ ଛନ୍ଦ ମୋ କଳାମୁକୁନ୍ଦ ।୨।



-୪୧-

ଶରଧାରେ କିଏ ଡାକଇ ତତେ କାଳିଆ
ରାଗିଗଲେ କିଏ ଗାଳିଦେଇ କହେ
ତୁ ଘରବୁଡ଼ା କପଟିଆ ।୦।

ହାତ ନାହିଁ ତୋର ଜାଣିଛି ଜଗତ
ତଥାପି ବୋଲାଉ ତୁ ବଡ଼ ଦାତା
ଗୋଡ଼ ନାହିଁ ତୋର ଦେଖନ୍ତି ସଭିଏଁ
ତେବେ ବି ବୋଲାଉ ଜଗତକର୍ତ୍ତା
ଚକାଚକା ଆଖି ଚଉଦିଗ ଦେଖେ
ବୋଲନ୍ତି ତୁ ଚଉଆଖିଆ ।୧।

କାନ ନାହିଁ ତୋର ଜାଣନ୍ତି ସଭିଏଁ
ତୋ ଆଗେ ଜଣାନ୍ତି ନିଜର ଦୁଃଖ
ମନ ଥାଇ ତୁ ମନୁଆ ବୋଲାଉ
କର୍ମ ଘେନି ଦେଉ ସୁଖ କି ଦୁଃଖ
ଚିକ୍‌କଣ କଳା ମୁହଁକୁ ତୋର
ବୋଲନ୍ତି କେ ଚନ୍ଦ୍ରଉଦିଆ ।୨।



-୪୭-

ମୁଁ ଏକ ଭଙ୍ଗା ନାଆ ତୁ ମୋ ନାଉରୀ
ତୁ ମୋ ନାଉରୀ
ତୋ ଇଚ୍ଛାରେ ଯାଉଛି ମୁଁ ଚାଲି କାଳିଆରେ
ଭଉଁରିରେ ଖେଳାଇବୁ ଅବା କୂଳେ ଲଗାଇବୁ
ଯା'ଇଚ୍ଛା ତୋହରି ।୦।

ତୋ ଇଚ୍ଛାରେ ନାଆଟିଏ ହୋଇ
ଭବଜଳେ ଭାସେ ତୋ ପାଇଁ
କେତେବେଳେ ମଝି ଦରିଆରେ
କେତେବେଳେ ଉଜାଣି ସୁଅରେ
ଭସାଇ ମତେ ତୁ ପରଖୁ ମାୟା ମୋହେ ମତେ ବାନ୍ଧି ରଖୁ
ତୋ ଇଚ୍ଛାରେ କରୁଥାଉ ଏପାରି ସେପାରି
କାଳିଆରେ ।୧।

ତୋ ଇଚ୍ଛାରେ କରମ ମୁଁ କରେ
ଭଲମନ୍ଦ କିଛି ନ ବିଚାରେ
ତୋ ହାତରେ ମୋ ମନ-ଦଉଡ଼ି
ଯେଣେ ଇଚ୍ଛା ତେଣେ ନଉ ଭିଡ଼ି
ଭବଜଳେ ବୁଡ଼ାଇବୁ ମାରି ସୁଖରେ ତୁ ଦେବୁ ପାରିକରି
ତୋ ହାତରେ ଅରପିଛି ଜୀବନ ମୋହରି
କାଳିଆରେ ।୨।



–୫୩–

ଖଣ୍ଡିଆ ହାତ ମୋ ଜଗତନାଥରେ
ଖଣ୍ଡିଆ ହାତ ମୋ ଜଗତନାଥ
ସେଇ ହାତରେ ସେ ସାରା ସଂସାରକୁ
ଯୋଗାଇ ଦଉଛି ଅଭଡ଼ା ଭାତ ।୦।

ତା ଦୁଆରୁ କେହି କେବେ ଫେରିନାହିଁ
ଖାଲିପେଟ ଅବା ଶୂନ୍ୟ ହସ୍ତରେ
ଉଜାଡ଼ି ଦେଇନି କାହା ଘର ଜଗା
ବାନ୍ଧିଛି ଯେ ତାକୁ ସ୍ନେହ ଡୋରିରେ
ପାପୀକୁ ମାରିଛି ସାଧୁକୁ ତାରିଛି
ଖଣ୍ଡିଆ ହାତ ତା ଏତେ ଶକତରେ
ମହାବାହୁ ବୋଲି ଜଗତେ ଖ୍ୟାତ ।୧।
ଗୋଡ଼ ନାହିଁ ସିନା ଜଗାକାଳିଆର
ଏ ସାରା ଜଗତ ତା ଭିଆଣ
ଜଳ, ସ୍ଥଳ ପୁଣି ଆକାଶ, ପବ୍‌ନ
ସୁଖଦୁଃଖ ସବୁ ତାଆରି ଦାନ
ତାକୁ ଯେ ଚିହ୍ନିଛି ପରାଣ ବିକିଛି
ଜାତି ଅଜାତିର ନାହିଁ ତ ଭେଦରେ
(ସେତ) ଭକତଜନର ପଙ୍କଜ-ପାଦ ।୨।



-୪୪-

ତୁ ଭୁଲିଛୁ ସିନା ମୋତେରେ କାଳିଆ
ତୁ ଭୁଲିଛୁ ସିନା ମୋତେ
ମୁଁ ଭୁଲିନି ତୋର ବଡ଼ଦାଣ୍ଡ ଧୂଳି
ଅଭଡ଼ା ଭାତକୁ ସତେ ।୦।
କଳାଁ କଳା ତୋର ଚିକ୍କଣ ଦେହଟା
ଆଖିରେ ମୋ ନାଚିଯାଏ
ବଳିଆ, ସୁଭଦ୍ରା ସାଥେ ତୋର ହସ
ମନ ମୋ ନିତି ଝୁରିହୁଏ
ଭକତଙ୍କ ମେଳେ କି ସୁଖ ଗହଳେ
ଲୀଳା କରୁଅଛୁ ସତେ
କେମିତି ଭୁଲିବି ତୋ ସ୍ନେହ ଜଗାରେ
ଢାଳି ଦେଇଛୁ ମୋ ହାତେ ।୧।
ଯେଣିକି ଚାହିଁଲେ ତେଣେ ଦିଶୁଥାଏ
ବଡ଼ଦେଉଳର ନେତ
ବାରମାସେ ତେର ପରବେ ତୋହର
ଭେଟିବି ହେବ କି ଭାଗ୍ୟ
କେମିତି ସୁଝିବି ତୋ ଋଣ ଜଗାରେ
ଭରିଛୁ ଜୀବନପାତ୍ରେ ।୨।



-୪୪-

ଦେଖ ଏଇ କପଟିଆ କଳାକାହ୍ନୁକୁ
ଇଏ ପରା ଆମ ସଖା
ବୁଝେ ଆମ ମନକୁ ।୦।
ଆମେ ନ ପାଉଛୁ ଦାନା ଷାଠିଏ ପଉଟି ଅନା
ନିତି ଖାଇ ହାଇମାରେ ଦେଖ ଛଇକୁ
ଆମେ ନ ପାଉଛୁ ବାସ ଅଷ୍ଟ ଅଳଙ୍କାର ବେଶ
ବାଙ୍କ ଚାହାଣୀରେ ଚାହିଁ
ହରେ ମନକୁ ।୧।
ଆମ ନିଦ ଯାଏ ହଜି ସପନେ କାଳିଆ ମଜି
ରତନ ପଲଙ୍କରେ ଭାଙ୍ଗୁଅଛି ଅଳସକୁ
ନିରାଶେ ହେଉଛୁ ଘାରି କେତେ ପଣ୍ଡା, ପଢ଼ିହାରି
ଖଟୁଛନ୍ତି ଦିବାନିଶି
ପାଦତଳକୁ ।୨।
କଷଣ ନ ପାରୁ ସହି ପଥର ଦେଉଳେ ରହି
ପଥର କି କରିଦେଲା ତାର ଛାତିକୁ
ବଳିଆରଭୁଜ ବୋଲି ତୋତେରେ ଭରସା କରି
ଆଶ୍ରା କରିଲୁଣି ସଖା
ଭଙ୍ଗା ନାବକୁ ।୩।



—୪୭—

ବୁଲିଛି ମୁଁ ଘର ଘର
ବୁଲିଛି ଗ୍ରାମ ନଗର
ସବୁଠି ତୋ ଲୀଳା ହେ ଜଗତସାଇଁ
ତୋ ବିନୁ ଅନ୍ୟ ଗତି ନାହିଁ ।୦।
ତୁ ଜନମ ତୁ ମରଣ
ତୁ ଧରମ ତୁ କରମ
ତୁ ମାୟାର ବନ୍ଧନ
ତୋରି ଲୀଳା ତୋରି ଖେଳା
ଆଉ ସବୁ ଭରମ
ସବୁଠାରେ ଥାଇ ଛଳନା କରୁଛୁ କାହିଁ
ତୋ ବିନୁ ଅନ୍ୟ ଗତି ନାହିଁ ।୧।
ତୁ ଜୀବ ତୁ ଜୀବନ
ତୁ ପାପ ତୁହି ପୁଣ୍ୟ
ତୁ କରତା ସବୁରି
ତୋ ମାୟାରେ ବାୟା ହୋଇ
କରମ ଯାଏ କରି
ସବୁ କରାଇ କରୁ ତୁ ମିଛେ ନାହିଁ ନାହିଁ
ତୋ ବିନୁ ଅନ୍ୟ ଗତି ନାହିଁ ।୨।



-୪୭-

ତୋ ବାଇଶି ପାହାଚେ
ପଥରଟେ ହୋଇ ଯୁଗ ଯୁଗ ପଡ଼ିଥିବି
ତୋ ମୁହଁକୁ ଚାହିଁ
ତୋ ଗୁଣକୁ ଗାଇ ଶ୍ରୀମୁଖକୁ ଦେଖୁଥିବି ।୦।

ଭକତଙ୍କ ପାଦଧୂଳି
ନିତି ପଡୁଥିବ ଝରି
ମୋ ଦେହରେ
ପାପ କ୍ଷୟ ହେଉଥିବ
ପବିତ୍ର ମୁଁ ହେଉଥିବି
ତୋ ଦୁଆରେ
ଜନମ ଜନ୍ମାନ୍ତରେ ପଥରଟେ ହେବା ପାଇଁ
ଜଗାରେ ମନାସୁଥିବି ।୧।

ତୋର ଘୋଷଯାତ୍ରା ବେଳେ
ଆସିବୁ ତୁ ପହଣ୍ଡିରେ
ଲାଗି ଶ୍ରୀଅଙ୍ଗ
ଖଣ୍ଡିବ ଯେତେ ପାତକ
କରିଛି ଜନମଯାକ
ଗର୍ବ, ମୋହରେ
ପଥର ହୋଇବି ମୋର କେଡ଼େ ଭାଗ୍ୟ କହ ପ୍ରଭୁ
କିଆଁ ମନ ଊଣା କରିବି ।୨।



-୪୮-

ତତେ କିଏ ସେ କରିଲା କାଳିଆ
ପୁଣି ନାଆଁ ଦେଲା ବାଙ୍କଚୂଳିଆ
ସବୁଠୁ ସୁନ୍ଦର ରୂପଟି ତୋହର
ତୋ ପରି କିଏ ସେ ରଙ୍ଗରସିଆ ।୦।

ବାଙ୍କ ଚୂଳେ ତୋର ମୟୂରପୁଚ୍ଛ
ବନଫୁଲ ହାରେ ହେଉ ତୁ ବେଶ
ତେରେଛା ଚାହାଣୀ ମନ ନିଏ କିଣି
ମନ ଝୁରୁଥାଏ ତୋ ହସ ମହୁଆ ।୧।

ମୋହନ ମୁରଲୀ ପାଇଲୁ କାହୁଁ
ଉଚ୍ଚାଟିଆ କରୁ ସଭିଙ୍କୁ ତୁଉ
କିଏ ଶିଖାଇଲା ତ୍ରିଭଙ୍ଗୀ ଠାଣି
ଚିତ୍ତ ଚୋରି କରୁ ବ୍ରଜରସିଆ ।୨।

ଯେତେ ଦେଖିଲେ ବି ନ ପୂରେ ଆଖି
ଏ ମନ ତୋ'ଠାରେ ଯାଇଛି ଲାଖି
କିମିଆଁ କରିଛୁ ସତେ କି ମତେ
କଳାକହ୍ନେଇରେ ମନମୋହନିଆ ।୩।



-୪୯-

ମନ-ବନହଂସୀ ଝୁରୁଛି ତୋତେରେ
ଆ' କଳାକାହ୍ନୁ ଥରେ କେଳିକୁଞ୍ଜେ
ଚନ୍ଦନଚର୍ଚ୍ଚିତ ଘନନୀଳତନୁ
ସଜାଇଦେବି ମୁଁ ପୀତବସନରେ ।୦।
ଖୋଜିଛି ତତେ ଶ୍ୟାମ ହେ
କେତେ ବର୍ଷା, ବସନ୍ତରେ
କେତେ ମଧୁମଳୟରେ
କେତେ ଗୋଧୂଳି ଲଗନେ
ଗୋପଦାଣ୍ଡେ ବୁଲି ବୁଲି
ବୃନ୍ଦାବନେ ଖୋଜି ଖୋଜି
ଯମୁନାତଟ ବିପିନେ
ମଥୁରା ଦାଣ୍ଡରେ ବୁଲି ନ ପାଇଲି ତୋ ଠିକଣା
କଳାମାଣିକରେ ମୋର
ସଜାଇବି ପୂଜାବେଦୀ କେତେ ମୁଁ ନୟନନୀରେ ।୧।
ତୋ କଥା ପଚାରିଛି
ଗିରି, ବନ, କାନନରେ
ପ୍ରିୟ ସଖା, ସଖୀଙ୍କୁ
ଯେତେ ଚିହ୍ନା, ଅଚିହ୍ନାରେ
ସର, ଲବଣୀ ସଜେଇ
ଯଶୋଦାର ସ୍ନେହ ନେଇ
ଗୋଧନ ବାହୁଡ଼ା ବେଳେ
ଡାକିଛି କଦମ୍ବ ମୂଳେ
କୁଂଜବନେ ଖୋଜି ଖୋଜି ନ ପାଇଲି ତୋ ଠିକଣା
ନଟବର ନାଗର ହେ
ଗଡ଼ି ଗଡ଼ି ଯାଏ ବେଳ ନିଶି ନଇଁଆସେରେ...।୨।



-୫୦-

ଆରେ ଆ' କାହ୍ନୁ ମୋ' କୋଳକୁ
ଖୋଇଦେବି ସରଳବଣୀ
ପୋଛିଦେବି ଝାଳ ଶ୍ରୀଅଙ୍ଗରୁ ତୋର
ଶିରୀହୀନ କେଡ଼େ ଦିଶିଲୁଣି ।୦।
ଅଝଟିଆ ପଣ କାଳକ ନ ଗଲା
ନଟିଆ ହଟିଆ ବୋଲାଇଲୁ
କେ ମାଇଲା ଛାଟ କେ କିଳେ କବାଟ
ସଭିଙ୍କୁ ତୁ କୂଟ ଦେଖାଇଲୁ
ଥକି ପଡ଼ିଛୁ କି ଖେଳି ଖେଳି କାହ୍ନୁ
ମୁଖ ତୋ ଝାଉଁଳି ପଡ଼ିଲାଣି
ଆ'ରେ ମୋ ପାଶେ ଶୋଇଦେବି କୋଳେ
ଅଝଟପଣ ତୋ' ଘେନିବିନ ।୧।
ମୁଁ ନୁହେଁ ତୋହର ଗୋପିକା ବଲ୍ଲଭୀ
ନୁହେଁ ମୁଁ ତ ମୀରାବାଈ
ଦେବକୀ ନୁହେଁ କି ଯଶୋଦା ନୁହେଁ ରେ
ଛଳାଇ ମାରିବୁ ତୁହି
ମୁଁ ଜାଣିଛି କାହ୍ନୁ ବଡ଼ ଛଳିଆ
ହେଲେ ଭକତ ପାଇଁ କି ବାଇ
ଆ'ରେ ମୋ ପାଶେ ତୋ ଫାନ୍ଦେ ଜଡ଼ିବି
ସୁଖଦୁଃଖ କିଛି ଲୋଡ଼ିବିନି ।୨।



-୫୧-

ଜଗାରେ କାହିଁକି ପାଶେ ଡାକିଲୁ
ମୋ ସାଥିରେ ବନ୍ଧୁ ବାନ୍ଧିଲୁ
ମୁଁ ଯଦି ତୋ ସରି ନ ଥିଲି ରେ ଜଗା
କିଆଁ ମିଛ ଫାନ୍ଦେ ଜଡ଼ାଇଲୁ ।୦।

ବନ୍ଧୁ ଯିଏ ସେ ତ ସୁଖରେ, ଦୁଃଖରେ
ଠିଆ ହୋଇଥାଏ ବନ୍ଧୁର ଦୁଆରେ
ଧନହୀନ ବୋଲି କପଟ କି କଲୁ
ହାଟ ମଝିଟାରେ ବାଟ ହୁଡ଼ାଇଲୁ
ମିଛେ ଦୀନବନ୍ଧୁ ବୋଲାଇଲୁ ।୧।

ତୋ ଶିରୀକ୍ଷେତ୍ର କାହିଁ କେତେ ଦୂର
ଶଂଖୋଳିବାକୁ ଯାଇ ପାରେନା ମୁଁ ଛାର
କିଏ କେତେ ଦିଏ ମୁଁ ଦେଇପାରିନି
ନ ଦେଲୁ ବୋଲି ତୁ. ପର ମୁଁ ଭାବିନି
ଭବ ଜଳଧିରେ ବୁଡ଼ାଇ ମାରିଲୁ ।୨।



-୫୨-

ମୁଁ ନୁହଁଇ ତୋର ରାଇକିଶୋରୀ
ମୁଁ ନୁହଁଇ ମୀରା ଚିରକୁମାରୀ
ପାରିବୁନି ଜଳାଇ କି ଛଳାଇ
ଆହେ ନନ୍ଦସୁତ ବ୍ରଜବିହାରୀ ।୦।
ରଚେନା ମୁଁ ଅଭିସାର
ନିତି କେଳିକୁଞ୍ଜରେ
ଖୋଜିବୁଲେ ନିତି ତତେ
ଏ ମନ ମନ୍ଦିରରେ
କଳଙ୍କିନୀ ଅପବାଦ କାହିଁକି ମୁଁ ବହିବି
ତୋ ଗୁଣ ସୁମରି ଭବ-ସିନ୍ଧୁ ପାର ହେବି
ମତେ ପାରିବୁନି ଦଗାଦେଇ
ଆହେ ଶ୍ୟାମଘନ କୁଞ୍ଜବିହାରୀ ।୧।
ଲୋଡ଼େନା ତୋ ପ୍ରେମପ୍ରୀତି
ଝରାଇବି ଲୋତକ
ତୋ ଆଶିଷ ଲଭୁଥିବି
ଏ ସାରା ଜୀବନଯାକ
ଭିକାରୀ ମୁଁ ହେବା ପାଇଁ
ନାହିଁ ତ ଟିକେ ଶୋଚନା
ତୋର ନାମ ଗାଇ ଗାଇ
ବୁଲିବି ସାରା ଦୁନିଆ
ତୋ ଫାନ୍ଦେ ଜଡ଼ାଇ ପାରିବୁନି
ଆହେ କପଟିଆ କୃଷ୍ଣମୁରାରୀ ।୦।



–୫୩–

ଜଗାକାଳିଆରେ ଜଗାକାଳିଆ
କେଣିକି ଯାଉଛୁ କହ ନିମିଷେ ଅଟକି ରହ
ସଙ୍ଗେ ଘେନି ସୁଭଦ୍ରା ଭାଇ ବଳିଆ
ଜଗାକାଳିଆରେ ଜଗାକାଳିଆ ।୦।

କେମିତି କହିବି କହ ବଳିଆକୁ ବଡ଼ ଭୟ
ନିମିଷକେ ରୁଷିଯିବ ଆନନ୍ଦେ ବିଷାଦ ଦେବ
ଭଉଣୀ ତୋ ଅତି ଗେହ୍ଲି
ପାଇଅଛି ଭାଇଟିଏ ତୋ ଭଳିଆ
ଜଗାକାଳିଆରେ ଜଗାକାଳିଆ ।୧।

ତୋ ଗୁଣ କହିବି କିସ ଫନ୍ଦା ବାନ୍ଧୁଛୁ ଅଶେଷ
ଜାଣି ତୁ ମଉନ ରହୁ ଦେଖିବି ଜଳକା ହଉ
ଭେଳା ବୁଡ଼ିଯାଏ କା'ର
ଆଶ୍ରା କରି ତୋ ଭଳି ନବରଙ୍ଗିଆ
ଜଗାକାଳିଆରେ ଜଗାକାଳିଆ ।୨।



—୫୪—

ମୁଁ ଗରିବ ତୁ ଧନୀ
ମୁଁ କୃପଣ ତୁ ଦାନୀ
ସେଥିପାଇଁ ବୋଲାଉ ତୁ ଜଗତଠାକୁର
ଦେଖିବା ପାଇଁକି ତତେ ଜଗତ ପାଗଳ
ହେ କଳା ଠାକୁର
ଏତିକି ଫରକ ତୋଅର ମୋ'ର ।୦।
ତୁ ଦଉଛୁ ମୁଁ ନଉଛି
ତୋ ହାତଟେକାକୁ ଜଗତ ଚାହିଁଛି
ତୁ ତ ରାଜା ମୁଁ ତୋ ପ୍ରଜା
ଏ ସାରା ଦୁନିଆ କରେ ତୋତେ ପୂଜା
ହେ କଳାଠାକୁର
ଏତିକି ଫରକ ତୋଅର ମୋର ।୧।
ତୁ ହସୁଛ ମୁଁ କାନ୍ଦୁଛି
ସଂସାର ମାୟାରେ ମୁଁ ଝୁରି ମରୁଛି
ମୁଁ ବୁଝେନା ତୁ ସବୁ ବୁଝୁ
ଯେତେ ଦେଲେ କହେ କିଛି ଦେଇନୁ ତୁ
ହେ କଳାଠାକୁର
ଏତିକି ଫରକ ତୋଅର ମୋର ।୨।



-୫୫-

ମୁଁ ଦୁଃଖ କହିବି ନା ସୁଖ କହିବି
ହୋ ଜଗତନାଥ
ମୁଁ ଭଲ କହିବି କି ଭେଲ କହିବି
ହୋ ମନର ମିତ
ସବୁ ଶୁଣି ଯେବେ କିଛି ନ ଶୁଣୁ
ସବୁ ଜାଣି ଯେବେ କିଛି ନ ଜାଣୁ
କହିବାଟା ମୋର ହୋଇବ ବ୍ୟର୍ଥ
ହୋ ଜଗତନାଥ ।୦।
ତୁ ତ ରାଇଜ ରାଜା ତତେ ଗୁହାରି କରନ୍ତି ପ୍ରଜା
ମୁଁ ଛାର ଦୀନଜନ ହୋଇବି କି ତୋ କୃପାଭାଜନ
ତତେ ବନ୍ଧୁ ବୋଲି ହୃଦେ ସ୍ଥାନ ଦେଇ
ନ ପାଏ ତୋ ଠାରୁ ଟିକିଏ ବୋଧ
ହୋ ଜଗତମିତ ।୧।
ମୋ ଦେହ କଳଙ୍କିତ ଲୋଭ, ପାପ, ମୋହେ ଆଚ୍ଛାଦିତ
ତୁ ତ ପାପହାରକ ହେବୁ କିବା ପ୍ରଭୁ ମୋ ରକ୍ଷକ
ତୋ ସିଂହ ଦୁଆରେ ବାଇଶି ପାହାଚେ
ଦେଇକି ପାରିବୁ ମତେ ତୁ ଠାବ
ହୋ ଜଗତମିତ ।୨।

-୫୬-

ଦଗାଦିଆ ଶ୍ୟାମ ହେ ତତେ କୋଟି ଜୁହାର
ଦଗାଦେଇ ଶ୍ୟାମ ଝରାଇଛୁ କେତେ
ନିରୀହା ଅବଳା ନୟନୁ ନୀର...।୦।

କପଟ ସ୍ନେହ-ଫାଶରେ ବାନ୍ଧି ମନ କେତେ ରଙ୍ଗରେ
ରମଣୀ ପରାଣ ହରି ହସିଛୁ ତୁ ମନ୍ଦ ଅଧରେ
ଭାଙ୍ଗି କଳସୀକୁ କଳଙ୍କ ଦେଇଛୁ
ସାକ୍ଷୀ ଅଛି ପରା ଯମୁନା ତୀର...।୧।

ସରଳ ପରାଣେ ଗରଳ ଭରି ଆହେ ନଟବର
କି ଯଶ ପାଉଛୁ କହ ହେ ଲମ୍ପଟ ରଙ୍ଗାଧର
ଜଳାଇଛୁ ଯେତେ ପିଆସୀ ପରାଣେ
ସାକ୍ଷୀ ଅଛି ପରା କଦମ୍ବଫୁଲ ।୨।



-୫୭-

ଉଚ୍ଚାଟ କରୁଛି ମୋତେ
କାଳିଆର କଳା ରୂପ
ଦେଖିବି ବୋଲି ତାହାକୁ
ବିଷ ଲାଗେ ଆନ ସୁଖ ।୦।

ମୁଁ ଯିବି ଶ୍ରୀକ୍ଷେତ୍ରକୁ ବଡ଼ଦାଣ୍ଡେ ଉଭାହେବି
ନୀଳଚକ୍ର ବାନା ଚାହିଁ ଆନନ୍ଦେ ମଗନ ହେବି
ସିଂହଦ୍ୱାରେ ଉଭା ହୋଇ କାଳିଆ ବୋଲି ଡାକିବି
ବାଇଶି ପାହାଚ ଧୂଳି ତୁଣ୍ଡେ ଥରେ ମାରିଦେଇ
କହିବି କାଳିଆ ରଖ ।୧।

ବଡ଼ଦେଉଳକୁ ଯାଇ ବେନିନୟନ ପୂରାଇ
ଜଣାଇବି ମନ କଥା କଳାବଦନକୁ ଚାହିଁ
ପାଖକୁ ନେବ କାଳିଆ ଅଭୟ ଭୁଜ ବଢ଼ାଇ
ଆନନ୍ଦ ବଜାରରେ ଅଭଡ଼ା ଖାଇ ଥରେ
ଭୁଲାଇଦେବି ମୁଁ ଯେତେ ଦୁଃଖ ।୨।

—୫୮—

ପହଡ଼ ଭାଙ୍ଗିଲା କି ମୋ'
କାଳିଆ ସୁନାର କାଳିଆ ସୁନାର
ବଡ଼ଦେଉଳରେ କିଆଁ ଶୁଭେ ଏତେ ଗହଳ ।୦।

ନୀଳାମ୍ବର ପାଟ ଘେନି ଧାଏଁ କିଏ ତରବରେ
ସ୍ନାନ କରାଇବ ପରା ସୁବାସ ଚନ୍ଦନ ଜଳେ
ଦୟଣାର ମାଳା ଧରି ଉଭା କେଉଁ ପଡ଼ିଆରି
ବେଳ ଗଡ଼ିଗଲେ ଜଗା
ଲଗାଇଦେବଟି ଗୋଳ ।୧।

କେତେ ଦାସୀ, ପରିବାରୀ ଚରଣେ ତୋ ଖଟୁଛନ୍ତି
ଧନ୍ୟରେ ଚକାଆଖିଆ ତୋଠାରୁ କେ ନାହିଁ ସୁଖୀ
ବଡ଼ଦିଅଁ, ବଡ଼ଦାଣ୍ଡ ସବୁ ତୋର ବଡ଼ ବୋଲି
ଶ୍ରୀମୁଖ ଦର୍ଶନ ଲାଗି
ଭକତ ହୁଏ ଆକୁଳ ।୨।



–୫୯–

ଘାସଫୁଲ କରି ଜନମ ଦେଇଛ
ଦୟାମୟ ପ୍ରଭୁ ହରି
ତବ ପୂଜାଯୋଗ୍ୟ ହୋଇ ନ ପାରିବି
ହସୁଅଛି ମନ ଭରି ।୦।

ପଥିକର ପଦେ କଅଁଳ ପରଶ
ଦେଇ ମୋର ପ୍ରାଣ ହେଉଛି ଉଲ୍ଲାସ
ତବ ପାଦଧୂଳି ନ ପାଉଛି ବୋଲି
ଧୂଳିର ଶେଯରେ ପଡ଼େ ଶେଷେ ଝରି
ନର-ନାରାୟଣ ସେବା କରି ।୧।

ତାତିଲା ଭୂଇଁରେ ସବୁଜ ଶରୀରେ
ଛାତି ପତାଇଛି ଶୀତ କାକରରେ
କ୍ଷୁଦ୍ର ବୋଲି ମୁହିଁ ନୋହିଛି ଉଦାସ
ଟିକି ମନ ମୋର ନ ହୁଏ ନିରାଶ
ତବ କରୁଣା ପଡୁଛି ଝରି ।୩।



—୭୦—

ଜଗତର ନାଥ ବୋଲାଉ ତୁ ସିନା
ଅନାଥର ନାଥ ନୋହୁ
ମିଛେ ଚଉବାହା ଟେକିଛୁ କାଳିଆ
ଦୀନଜନେ ନିତି ଛଳାଉ ।୦।
ସିଂହଦୁଆରେ ଦୁଃଖୀ କାନ୍ଦି ମରେ
ପେଜ ଟୋପାଏକ ପାଇଁ
ଷାଠିଏ ପଉଟି ଖାଇ ତୁ ହସୁଛୁ
ବଡ଼ ଦେଉଳରେ ରହି
କନା ଖଣ୍ଡେ ବିନା କେ ସହେ କଷଣ
ପାଟ ମଠା ବେଶ ହେଉ ।୧।
ଆନର ନୟନୁ ଝରିଲେ ଲୋତକ
ରଙ୍ଗା ଅଧରୁ ଲିଭେନା ହସ
ନିଦହରା ହୋଇ କେ ତୋତେ ଝୁରଇ
ରତ୍ନ ପଲଙ୍କରେ ଭାଙ୍ଗୁ ଅଳସ
ପତିତପାବନ ନାମ ବହି କିମ୍ପା
ପାପ, ପଙ୍କରେ ବୁଡ଼ାଉ ।୨।
ତୋର ଯଶ, କୀର୍ତ୍ତି ଶୁଣି ଲକ୍ଷ୍ମୀପତି
ଶ୍ରୀରଙ୍ଗା ଚରଣେ ନେଲି ଶରଣ
ପାଶେ ଗଲେ ନାଥ ଦେଉ ତୁ ଦୂରେଇ
ଭାଙ୍ଗି ଯାଏ ମୋ ହୃଦୟର ଟାଣ
କି ବିଚାରି ପ୍ରଭୁ ମୋ ପାଇଁ ନିଷ୍ଠୁର
ନିଇତି ପରଖୁଥାଉ ।୩।



-୭୧-

କାହ୍ନୁ ହେ ! ବଜାଅ ଥରେ ବଂଶୀ
ଯେଉଁ ସୁରେ ଗୋପୀଙ୍କର ଭାଙ୍ଗୁଥିଲା ହୃଦ ଟାଣ
ଝୁରୁଥିଲା କିଶୋରୀ ବିଭୋରେ ଦିବାନିଶି ।୦।

କୁଞ୍ଜବନେ ଗୋପୀମେଳେ ବନଫୁଲେ ସାଜି ତନୁ
ଆସ ହେ ଯମୁନା ତୀରେ
ହସ ହସି ମନ୍ଦ ମନ୍ଦ ତୋଳ ଥରେ ମଧୁଛନ୍ଦ
ଝୁରୁଛି ତୁମକୁ କାହ୍ନୁ
ଅମାନିଆ ମନହଂସୀ ।୧।

ଡାକ ଥରେ ରାଧା ବୋଲି ପ୍ରୀତିରେ ଆବେଗ ଭରି
ପ୍ରାଣ ଖୋଲି ହସୁ ରାଈ
ସୁଦାମା ସୁବଳ ସଙ୍ଗେ ବିଭୋରେ ନାଚ ତ୍ରିଭଙ୍ଗେ
ଝୁରୁଛି ତୁମକୁ କାହ୍ନୁ
ଅମାନିଆ ମନହଂସୀ ।୨।

ତୁମ ନଟ, କୂଟ ଦେଖି ମନୁ ମାନ ଯାଉ ତୁଟି
ପାଶେ ଆସ ଚିତ୍ତଚୋର
ତୁମ ସେବା ଭକତିରେ ବିତାଇବି ଏ ଜୀବନ
ଝୁରୁଛି ତୁମକୁ କାହ୍ନୁ
ଅମାନିଆ ମନହଂସୀ ।୩।



-୭୨-

ସେଇ କାଳିଆ ଆଖି ସିନା ମୋ ଲାଗି ସାକ୍ଷୀ
ସିଏ ବୁଝେ ଦୁଃଖ ମୋହର
ସାଥୀହୀନ ସିନା ଦୁନିଆରେ ମୁହିଁ
ସିଏ ସାଥୀ ମୋର ମନର ।୦।

ବାସହୀନ ମୁହିଁ ସାହାହୀନ ସିନା
ବନ୍ଧୁ ମୋର ବଡ଼ ଠାକୁର
ବଡ଼ ମନେ ତାର ବଡ଼ ଶରଧାରେ
ତା ମନେ କରିଛି ମୋର ଘର
ଜଗାକାଳିଆଟି ସାଥୀ ମୋର ।୧।

ଅରକ୍ଷିତ ବୋଲି ମହାବାହୁ ତୋଳି
ଅଭୟ ଦେଇଛି ମୋତେ
ମନ୍ଦ ହାସେ ନିତି ମନକୁ ମୋହୁଛି
ଧୋଇ ଦେଇଛି ପାପ ମନର
ଜଗାକାଳିଆଟି ସାଥୀ ମୋର ।୨।



-୭୩-

ଶୂନ୍ୟରେ ବାଜୁଛି ବଂଶୀ
ଶୁଣୁଥା ଲୋ ମନହଂସୀ
ସାତସୁରେ କି ମଧୁରେ
ମନପ୍ରାଣ ନିଏ ରସି ।୦।

ଦିନ ନାଇଁ ରାତି ନାଇଁ ବାଜଣା ତ ସରେ ନାହିଁ
ଶୂନ୍ୟରୁ ଆସେ ପୁଣି ସେ ଶୂନ୍ୟରେ ମିଳାଏ କାହିଁ
ମନପ୍ରାଣ ଏକ କରି ଧ୍ୟାନରେ ରହିବୁ ଯେବେ
ସାତସ୍ୱନର ମହିମା ବୁଝି ତୁ ହୋଇବୁ ଖୁସି ।୧।

ବେଳ ଥାଉଁ ସାବଧାନ ବଂଶୀରେ କର ତୁ ଧ୍ୟାନ
ଆନମନା ହେଲେ ମିଛେ ହୁଡ଼ିବୁ ତୁ ବ୍ରହ୍ମଜ୍ଞାନ
ସେ ବଂଶୀକୁ କରି ଲୟ ହାତେ କାତ ଦୃଢ଼େ ଧର
ତରିଯିବୁ ଭବସିନ୍ଧୁ ସୁଖରେ ପାରିବୁ ହସି ।୨।



-୬୪-

ଆକାଶରେ କେତେ ତାରା
ସଙ୍ଗାତ ଲୋ, ଆକାଶରେ କେତେ ତାରା
ବଡ଼ଦେଉଳର ବଡ଼ଠାକୁର ସେ
ଦିଶଇ ସତେ କି ତୋରା ।୦।

ଚନ୍ଦ୍ରଉଦିଆ ରାତି ବଉଳ ଲୋ
ଚନ୍ଦ୍ରଉଦିଆ ରାତି
ଝୁଲି ଝୁଲି ଆସେ କାଳିଆହାତୀ ଲୋ
ଛାତି ମୋ ହୁଏ କରତି ବଉଳଲୋ ।୧।

ଉଡ଼ିଗଲେ ଗେଣ୍ଡାଳିଆ ମିତଣୀ ଲୋ
ଉଡ଼ିଗଲେ ଗେଣ୍ଡାଳିଆ
ମନପ୍ରାଣ ଦେଇ କାଳିଆ ସୁନାକୁ
ହୁଏ ଯା ହିନିମାନିଆ ମିତଣୀ ଲୋ ।୨।



-୭୫-

ଜଗତନାଥ ହୋ ଜଗତନାଥ
ଅନାଥଜନର ତୁ ପରା ନାଥ
ବଢ଼ିଲା ନଇକୁ ବଢ଼େଇ ଦଉ ତୁ
ପାରି ହେବା ପାଇଁ କାତ ।୦।

ତୋ ଭଳି ନାହିଁ କେ ଦୟାର ସାଗର
ନ କରୁ କେବେ ତୁ ପାତର ଅନ୍ତର
ଧନୀକୁ ଦଉ ତୁ ଦରିଦ୍ରକୁ ଦଉ
ଆନନ୍ଦେ ଅଭଡ଼ା ଭାତ ।୧।

ତୋ ଭଳି ନାହିଁ କେ କ୍ଷମାର ସାଗର
ପାପୀ, ତାପୀ ଜନେ କରୁ ତୁ ଉଦ୍ଧାର
କରୁଣାର ବାରି ମଥାରେ ବରଷି
ବଢ଼ାଇ ଦେଉ ତୋ ହାତ ।୨।



-୭୭-

ତୋ କୈବଲ୍ୟ କଣିକା
ମୋ ଭାଗ୍ୟେ ନାହିଁ ଲେଖା
ଶ୍ରୀକ୍ଷେତ୍ର ପାରେନି ଯାଇ
ଏଡ଼ିକି ଅଧମ ମୁଁ ସଂସାର ଜଂଜାଳ
ମାୟାରେ ବନ୍ଧା ମୁହିଁ ।୦।
ଭାବେ ମନେ ମନେ ଯିବି ଜଗା ପାଶେ
କଳା ମୁହଁକୁ ଅନାଇଁ
କହିବି ଗୋପନେ ମନ କଥା ମୋର
ଶୁଣିବ ସେ କାନ ଡେରି
ଏଡ଼ିକି ହୀନ ମୁଁ (ତୋ) ଦର୍ଶନ କରିବି
ଭକତି ମୋର କାହିଁ ।୧।
ତୋ ବଡ଼ଦାଣ୍ଡର ଧୂଳି ମୁଣ୍ଡେ ମାରି
ପାପ ଧୋଇବାକୁ ମନ
ତୋ ଭଜନ ଗାଇ ସଂଜ ଆଳତିରେ
ହୁଅନ୍ତି କି ହତଜ୍ଞାନ
ଏଡ଼ିକି ପାପୀ ମୁଁ (ତୋ) ନାମ ଗାଇବାକୁ
ତୁଣ୍ଡ ଲେଉଟେ ନାହିଁ ।୨।



-୭୨-

ମାଧବ, ମୁକୁନ୍ଦ, ଅନାଦି, ଶ୍ରୀହରି
ମଦନ, ମୋହନ, ବୃନ୍ଦାବନଚାରୀ ।

ଅନନ୍ତ, ଅଚ୍ୟୁତ, ଅନାଦି, ମୁରାରୀ
ଶ୍ରୀରାମ, ଶ୍ରୀବିଷ୍ଣୁ, କାଳୀ ଦର୍ପହାରୀ ।

ଜାନକୀବଲ୍ଲଭ-ରାମ-ରାବଣାରି
ନନ୍ଦନନ୍ଦନ ପ୍ରଭୁ ଇନ୍ଦ୍ର ଦର୍ପହାରୀ ।

ଗୋପୀଜନ-ମନ- ହରଷିତକାରୀ
ଯଶୋଦା-ନୟନ-ତାରା ତ୍ରିପୁରାରୀ ।

ଆଦିକନ୍ଦ, ନୃସିଂହ, ଗୋଲୋକବିହାରୀ
ଜୟ ଜୟ ଜଗନ୍ନାଥ ଭବଭୟହାରୀ ।



-୭୮-

ମୋ ପାଇଁ ଅଳକାପୁରୀ
ମୋ କୁଡ଼ିଆଘର
ତୋ ପାଇଁକି ବଡ଼ ତୋର
ବଡ଼ ଦେଉଳ
ତୁ ବଡ଼ ହେଇଥା' ମୁଁ ହୁଏପଛେ ସାନ
ଭାରି ହୁଏ ଯିଏ ରହେ ତଳକୁ
ଜାଣିନୁ କି କଳାଠାକୁର ।୦।

ତୋ ଘରେ ଜଳେ ଚନ୍ଦ୍ରଉଦିଆ
ମୋ ଘରେ ମାଟି ଦୀପଟିଏ
ତୋ ଘରେ କୁଣିଆ ନିତି ଆତଯାତ
ଗହଳ ଚହଳ କେତେ ଭୋଜିଭାତ
ମୋ ଦିନ ବିତେ ମୋ ସପନ ତୁଟେ
ଚାହିଁ ଆସିବା ବାଟକୁ ତୋର ।୧।

ତୋ ପାଶେ ବାଉନକୋଟି ଭଣ୍ଡାର
ମୋ ପାଇଁ ଅମୂଲ ଭଙ୍ଗା ଚାଳଘର
ଦେବଦାସୀ ନାଚ ଦିନେ ନ ଦେଖିଲେ
ପଲକ ନ ପଡ଼େ ତୋ ଚକା ଆଖିରେ
ମୋ ନିଦ ହଜେ ମୋ ସପନ ତୁଟେ
ଭଜି ଭଜି ନାମ ତୋହର ।୨।



—୬୯—

ଆରେ ମୋ କାଳିଆ ଚାନ୍ଦ
ଜାଣିଛୁ କେତେ ଯେ ଛନ୍ଦ
ତୋ ଫାନ୍ଦରେ ପଡ଼ି ହୁଏ ହରବର
ଏଡ଼ିକି ମୋ କପାଳ ମନ୍ଦ ।୦।

ତୁ ଟାଣୁଥାଉ ଧରମ ବାଟକୁ
ମନ ଧାଉଁଥାଏ ସଂସାର ହାଟକୁ
ଏ ପାଖରୁ ହୋଇପାରେନା
ସେ ପାଖକୁ ଯାଇପାରେନା
ମଝି ଦରିଆରେ ହୁଏ ଉବୁଟୁବୁ
ଏଡ଼ିକି ମୋ କପାଳ ମନ୍ଦ ।୧।

ତୋ ବାଟରେ ଗଲେ ସରଗ ସୁଖ
ମାୟାରେ ଭୁଲିଲେ ନରକ ଭୋଗ
ସବୁ ବୁଝି କିଆଁ ଏ ମନ ବୁଝେନା
ଭଲ ଲାଗେ କିଆଁ ଏ ମିଛ ଛଳନା
ଭାବି ବସିଲେ ମୁଁ ହୁଏ ବାଟବଣା
ଏଡ଼ିକି ମୋ କପାଳ ମନ୍ଦ ।୨।

-୭୦-

ତତେ କହିବି କାହିଁକି କାଳିଆ
ଜଣେ ନାହିଁ କିଏ ତୋ ଭଳିଆ
ମାଗିବା ଆଗରୁ ଜାଣିପାରୁ ସବୁ
ଅଜାଡ଼ିଦଉ ନିଜର ଭଳିଆ ।୦।

କିଏ ସେ କହନ୍ତି ତୁ ଧନୀର ଠାକୁର ପରା
କିଏ କେହ ତୁ ସବୁ ଜାଣିକି ଜାଣି ଚତୁର
ଭବରଙ୍ଗ ଭୂମି ତଳେ
ଖେଳାଉ ତୁ ମାୟା ଭୋଳେ
ଏଡ଼ିକି ତୁ ଭାବବିନୋଦିଆ ।୧।

କିଏ ଦୋଷ ଦିଏ ଦେଲୁନାହିଁ କିଛି ବୋଲି
ବୁଝିଲୁନି ଦୁଃଖ ନିଷ୍ଠୁର ଅନ୍ତର ଖୋଲି
ତୁ କରି କରାଉଥାଉ କେଉଁଠିରେ ନ ଥାଉ
ଏଡ଼ିକି ତୁ ନବରଙ୍ଗିଆ ।୨।



-୬୧-

ଏ ପାରିରୁ ସେ ପାରିକୁ
ନେଇଯା' ମତେ
ବଇକୁଣ୍ଠେ ଢଗୁଆଳି
କରିଦେ ମତେ
କାଳିଆରେ କାଳିଆ
ଏତିକି ମାଗୁଣି ମୋ ରଖିବୁ ସତେ ।୦।

ପିଲାବେଳେ ବିତିଗଲା ଧୂଳିଖେଳରେ
ଯୁବା ବୟସ ବିତିଲା ପ୍ରିୟା ସାଥିରେ
ଡାକିନି ମୁଁ ଦିନେ ତତେ ସୁଖ, ଗରବେ
ଦୂଇକୂଳ ଛଡ଼ା ହୋଇ ଭରସା ଟିକିଏ ପାଇଁ
ଏ ମନ ଝୁରୁଛି ଆଜି ଜଗାରେ ତତେ ।୧।

ପଥର ମୂରତି କିସ ପାରିବ କରି
ଭାବୁଥିଲି ଯଉବନେ ମୁଁ ବଳଶାଳୀ
ଚିହ୍ନିପାରିଲିନି ପ୍ରଭୁ ତୁ କରି କରାଉ ସବୁ
ଅନୁତାପେ ଆଜି ଜଳେ ମୋ ମନ ସତେ ।୨।



-୭୨-

ତୁ ନାଆ ଦେଲୁ
ତୁ ନଇ ଦେଲୁ
ଦେଲୁ ହାତେ ଭଙ୍ଗା କାତ
ମଝି ଦରିଆରେ ଭାସୁଛି ପ୍ରଭୁ ହେ
ସାହା ହୁଅ ଜଗନ୍ନାଥ ।୦।

ବହେ ଉଜାଣି ପବନ
ଭୟରେ କମ୍ପଇ ମନ
ନାଆ ହୁଏ ଟଳମଳ
ସାହା ହୁଅ ଆଦିମୂଳ
ତୁ ଚାହିଁଲେ ପ୍ରଭୁ ଭରିବ ଶକତି
ହେଉ ପଛେ ଭଙ୍ଗା କାତ ।୧।

ଜାଣିଛି ମତେ ପରଖୁ
ମନର ଭକତି ମାପୁ
ମୁଁ କି ହେବି କହ ସରି
ଆନ ଭକତଙ୍କ ପରି
ତୁ ଚାହିଁଲେ ସାତ ସାଗର ଲଂଘିବି
ଥାଉ ହାତେ ଭଙ୍ଗା କାତ ।୨।



-୭୩-

ତୋ ବଡ଼ଦେଉଳଠୁ ଦେଉଳଟେ ନାହିଁ
କହନ୍ତି ଜଗତେ
ମୋ ଭଂଗା କୁଡ଼ିଆଠୁ କୁଡ଼ିଆଟେ ନାହିଁ
ମୁଁ କହୁଛି ତତେ
କାଳିଆରେ ତୁ ରାଗିଯାଉଛୁ କି ସତେ ।୦।

ତୋ ଦେଉଳେ ନିତି ଗହଳଚହଳ
ପଣ୍ଡା, ପଢ଼ିଆରୀ, ଭକତଙ୍କ ଗୋଳ
ବାରମାସେ ତେର ଯାତରା
ମୋ କୁଡ଼ିଆଘର ନୀରବ, ନିଶୁନ
କରମ ଫଳକୁ ଆଶରା
କାଳିଆରେ ବେଳ ପାଏନା ଡାକିବି ତତେ ।୧।

ରତ୍ନ ସିଂହାସନେ ବସି ତୁ ହସୁଛୁ
କିମଆଁ ଲଗାଇ ମନକୁ ରସୁଛୁ
ତୁ ଅଟୁ ବଡ଼ କଳାକାର
ମତେ ଲୋଡ଼େନାହିଁ ଦୁନିଆରେ କେହି
ଜାଣିନି ବୋଲି ମୁଁ ହୁନ୍ଦର
କାଳିଆରେ ବେଳ ପାଏନା ବୁଝିବି ତତେ ।୨।



-୭୪-

ମାଆ ମାଆ ବୋଲି
ଡାକିଦେଲେ ଥରେ
ମମତାର ମଧୁ
ମରମରେ ଝରେ
ମାଆ ପରି କିଏ ହେବ
ଭୁଜ ଛାଇ ତଳେ ଅଭୟ ଆଶ୍ରୟ
ତା'ପରି କିଏ ସେ ଦେବ ।୦।
ମନ ସାଗରରେ ଅଶାନ୍ତ ଲହରୀ
କରେ ଯେବେ ବାଟବଣା
ମାଆ ନାମ ଧରି ଚାଲୁଥିଲେ ସଦା
ଦୁଃଖ ନ ପଡ଼ଇ ଜଣା
ମାଆ ମୋ କରୁଣାମୟୀ
କରୁଣା କଣିକା ବରଷୁଥାଏ ସେ
ତା'ପରି କିଏ ସେ ହେବ ।୧।
ଅଝଟିଆ ହେଲେ ସନ୍ତାନ ତାହାର
ଆଦରେ ନିଏ କୋଳେଇ
ଭଲ ଅବା ଭେଲ ବୁଝାଇଦିଏ ସେ
ମରମେ ଆଶା ଜଗାଇ
ମାଆ ମୋ ମମତାମୟୀ
ତା ସ୍ନେହ ପଣତ ତଳେ ନାହିଁ ଡର
ତା'ପରି କିଏ ସେ ହେବ ।୨।



–୭୫–

ମାଆ ଆସିଛିରେ ମାଆ ଆସିଛି
ଶରତେ ମରତ ସ୍ୱର୍ଗ ପାଲଟିଛି
ମାଆର ପରଶ ପାଇ ।୦।
ମାଆ ବୋଲି ଯିଏ ଯେଉଁଠି ଡାକେ
ତା'ପାଶେ ପହଞ୍ଚିଯାଉ
ବିପଦରେ ପଡ଼ି ଯେ ତୋତେ ଖୋଜେ
ଆଦରେ କୋଳେଇ ନଉ
ତୁ ମାଆ ଜଗତର ସାହା
ତୋ ପରି ନାହିଁ କେହି ।୧।
ମାଆ ପାଶେ ସନ୍ତାନର ଅଝଟ
ମିଠା ଲାଗେ ମାଆ ଆକଟ
ସବୁ କଳୁଷକୁ ଧୋଇନିଏ ମା'
ଅନ୍ଧାରେ ଦେଖାଏ ବାଟ
ତୁ ମାଆ କ୍ଷମାର ସାଗର
ତୋ'ପରି ନାହିଁ କେହି ।୨।



–୭୭–

ମାଆ ଗୋ ! ଦୁର୍ଗେ ଦୁର୍ଗତିନାଶିନୀ
ଭବଭୟ-ହାରିଣୀ କାମ, କ୍ରୋଧ, ନାଶିନୀ
ମାଆଗୋ ଗରବଗଂଜନୀ ।୦।

ତୁ କାଳୀ, କପାଳୀ ଶିବଦୂତ କରାଳୀ
ତୁ ବ୍ରାହ୍ମୀ, ମାହେଶ୍ୱରୀ ତୁ ବୈଷ୍ଣବ, କୌମାରୀ
ତୁ ଅଗ୍ନିଜ୍ୱାଳା ତୁ ରୌଦ୍ରମୁଖୀ
ତୁ ଜଗତଭୟ ନାଶିନୀ ।୧।

ତୁ ଚନ୍ଦ୍ରାନନା ମାଆ ତୁ ମହାଗୌରୀ
ତୁ ସାବିତ୍ରୀ ଗୋ ତୁ ଭୁବନେଶ୍ୱରୀ
ତୁ ସରସ୍ୱତୀ ତୁ ଗାୟତ୍ରୀ
ତୁ ଅଜ୍ଞାନ-ଜ୍ଞାନ-ଦାୟିନୀ ।୨।

ତୁ ମୋହିନୀ ମାଆ ତୁ ସଂହାରିଣୀ
ତୁ ସର୍ବମଙ୍ଗଳା ବ୍ରହ୍ମାଣୀ ବିମଳା
ତୁ ଶିବପ୍ରିୟା ତୁ ମହାମାୟା
ତୁ ସତ୍ୟରୂପା, ସତ୍ୟବାଦିନୀ ।୩।



-୬୭-

ମାଆ ଗୋ ଦଶଭୂଜା
ଘେନାକର ମୋର ପୂଜା
ଦୁର୍ଗତି କର ଦୂର ମାଆଗୋ ବିରଜା ।୦।

ତୁ କାଳୀ ତୁ ଦୁର୍ଗା
ତୁ ଶକ୍ତି ତୁ ଶିବା
ଦୁଷ୍ଟ ନିବାରିଣୀ ଜନନୀ
ତୁ ପାପୀ-ତାପୀ ସଂହାରିଣୀ
ମାଆ ଗୋ ବରଦା ।୧।

ତୁ ଅମ୍ବା, ଅମ୍ବିକା
ତୁ ଯୋଗିନୀ, ଚଣ୍ଡିକା
ସନ୍ଥ ପାଳିନୀ ଜନନୀ
ଜୟ ଗୋ ମହିଷମର୍ଦ୍ଦିନୀ
ମାଆ ଗୋ ମୋକ୍ଷଦା ।୨।



-୭୮-

ସିଂହବାହିନୀ ମା'ଗୋ ବରଦାୟିନୀ
ସୁଖ ଦେ ମା' ଶାନ୍ତି ଦେ
ଶକ୍ତି ଦେ ମା' ମୁକ୍ତି ଦେ
ଅଭୟ ବରଦାୟିନୀ ।୦।
ଯୁଗେ ଯୁଗେ ମା'ଗୋ ଆସୁ ଅବତରି
ଦୁର୍ଗତି ନାଶ କରୁ
ତୋର ନାମ ଧରି ସଭିଏଁ ଭୁଲନ୍ତି
ଦୁଃଖ ଭବସାଗରରୁ
ନମୋ ନାରାୟଣୀ
ମାଆ ଗୋ ଦେବମାତା କାତ୍ୟାୟିନୀ ।୧।
ଜାଣେନା ମୁଁ ତୋର ବନ୍ଦନା ଗାଇ
ଜାଣେନା ପୂଜା, ଅର୍ଚ୍ଚନା
ମାଆ ବୋଲି ତୋତେ ଭରସା ରଖି ମୁଁ
ହୃଦୟେ କରିଛି ଘେନା
ନମୋ କ୍ଷମାମୟୀ
ମାଆ ଗୋ ଭବାନୀ ଭବମୋଚନୀ ।୨।



-୭୯-

ସଂକଟୁ ଉଦ୍ଧରେ ବିପଦରୁ ତାରେ
ପାପ-ତାପ ହରି ମୁଖେ ହସ ଭରେ
ସିଏ ତ ଗୋଟିଏ ମାଆ
କୋଟିଜନଙ୍କର ଦୁଃଖେ ସୁଖେ ସାହା
ତାରିଣୀ ମାଆ ସେ ତାରିଣୀ ମାଆ ।୦।

ଡାକିଦେଲେ ଥରେ ଥାଉ ଯେତେ ଦୂରେ
କାନ ଡେରି ଶୁଣେ ଦୁଃଖୀର ଦୁଃଖ
ନିମିଷକେ ଆହା କୋଳେଇନିଏ ସେ
ଘୁଞ୍ଚାଇଦିଏ ସେ ସକଳ ଦୁଃଖ
ତା'ପରି କେ ହେବ ସାହା
ତାରିଣୀ ମାଆ ସେ ତାରିଣୀ ମାଆ ।୧।

ଶାଳବଣେ ବସି ସବୁ ସେ ଦେଖୁଛି
ଭକ୍ତ ଜନର ଶୁଣୁଛି ଡାକ
ଭକତି ଅନ୍ତରେ ଭଜଇ ଯେ ତାକୁ
ଧୋଇଯାଏ ତାର ସକଳ ପାପ
(ସେ) ଭକତ ପ୍ରେମରେ ବନ୍ଧା
ତାରିଣୀ ମାଆ ସେ ତାରିଣୀ ମାଆ ।୨।



-୮୦-

ଝାଉଁବଣ ଫାଙ୍କେ କିଏ ଲୋ
ମିତ, କଣେଇଁ କଣେଇଁ ଚାହେଁ ଲୋ
ଶହେ ଯୋଜନରୁ ଭକତକୁ ଡାକି
ଆଦରେ କୋଳେଇନିଏ ଲୋ ।୦।

ନଡ଼ିଆରେ ତାର ଭାରି ଶରଧା
ନାଲିଆ ମନ୍ଦାର ଗଳାରେ ଶୋଭା
ଶାଳବଣ ରାଣୀ ଜଗତ ଜନନୀ
ଜଗତର ଦୁଃଖ ହରି ନିଏ ଲୋ ।୧।

ଗଛମୂଳେ ସିନା ବସିଛି ମାଆ
ସାରା ଜଗତର ସେ ଏକା ସାହା
ଭୋଗ ତୁ ବାଢ଼ିବୁ ମାଆକୁ କହିବୁ
ତୋ ପରି କିଏ ହେବ କହ ଲୋ ।୨।



-୮୧-

ମିତଣୀ ଲୋ ମିତଣୀ...ଶୁଣିବୁ କି ଥରେ
ମନ ମୋର ହଜିଗଲା ଶାଳବଣରେ ।୦।
ପତର ପତର ଶାଳ ପତର ...ପତର ଫାଙ୍କରେ ଜହ୍ନ
ନାଲି ଚହ ଚହ ସିନ୍ଦୂର ଯା' ମୁଣ୍ଡେ
ତାକୁ ଦେଖିବାକୁ ମନ
ଟପ ଟପ ଶୁଭେ ଘୋଡ଼ାର ଟାପୁ
କିଏ ସେ ଆସୁଛି ଧାଇଁ
ଗଛ ଉହାଡ଼ରେ ଲୁଚି ମୁଁ ଦେଖିଲି
ମାଆ ତ ଆସୁଛି ଧାଇଁ
ସେଇଦିନୁ ପଡ଼ିଗଲି ତା ସ୍ନେହ-ଜାଲରେ ।୧।
ମାଆ ଚାଲିଗଲା ନିଜ ବାଟେ ତାର
ମୁଁ ତ ହେଲି ପାଗଳିନୀ
ଦିନରାତି ଖାଲି କଲି ଜପାମାଳି
ତାରିଣୀ ମାଆ ତାରିଣୀ
ଯୁଆଡ଼େ ଚାହୁଁଛି ତା ରୂପ ଦିଶୁଛି
କୁହୁକ କଲା କି ମାଆ
ବନ୍ଧୁ, ପରିଜନ ସବୁ ମୁଁ ଭୁଲିଛି
ମାଆ ଏକା ମୋର ସାହା
ସଂସାର ବାନ୍ଧିବି ଯାଇ ଘଟଗାଁରେ ।୨।



-୮୨-

ମନ୍ଦାର ଲୋ ମନ୍ଦାର ନାଲିଆ ମନ୍ଦାର
ମାଆର ପୂଜାରେ ଲାଗିଥାଉ ନିତି
ମାଆ ପାଶେ ଦିଶୁ କେଡ଼େ ସୁନ୍ଦର ।୦।

ତୋଠାରେ ମାଆର ଭାରି ଶରଧା
ତୋ ବିନା ତା' ପୂଜା ରହେ ତ ଅଧା
ନାଲି ଟହ ଟହ ମନ୍ଦାରମାଳେ
ସାଜିଥାଏ ମାଆ ସଂଜ ସକାଳେ
ମନ୍ଦାର ଲୋ ମନ୍ଦାର କେଡ଼େ ଭାଗ୍ୟ ତୋହର
ମନ୍ଦାରମାଳ ନ ହେଲେ ନାହିଁ ମୁଁ
ହୁଅନ୍ତି କି ଧୂଳି ପାଦ ତଳର ।୧।

ତୋ ପରିକା ଜନ୍ମ ପାଇବି ସତେ
ସୌଭାଗ୍ୟବତୀ ବୋଲାନ୍ତି ଜଗତେ
କୋଟି ଜନ୍ମ ପୁଣ୍ୟ ଯାଆନ୍ତା ମିଳି
ଭବ ବନ୍ଧନରୁ ଯାଆନ୍ତି ତରି
ମନ୍ଦାର ଲୋ ମନ୍ଦାର କେଡ଼େ ପୁଣ୍ୟ ତୋହର
ମାଆର ଆଶିଷେ ଦିଶୁ ସୁନ୍ଦର ।୨।



-୮୩-

ତାରିଣୀ ମାଆଲୋ ତାରିଣୀ ମାଆ
ଆପଦେ ବିପଦେ ହଉ ତୁ ସାହା
ଶୁଣିଥିଲି ତୋର ମହିମା ବୋଲି
ଆଶା ନେଇ ପାଶେ ଆସିଲି ଚାଲି
ବିପଦେ କଲୁନି ଟିକିଏ ଆହା ।୦।

କିଏ କିସ ଦେଲା ମୁଁ ନ ଦେଲି
ନଡ଼ିଆ ରଙ୍କୁଣୀ ମୁଁ ଜାଣିଥିଲି
ନଡ଼ିଆ ସାଥୀରେ ମନ୍ଦାରମାଳ
ଅରପିଥିଲି ମା' ପାଦରେ ତୋର
ଭକତି ଊଣା କି ହୋଇଲା ମାଆ ।୧।

ମାଆ ଅଟେ ପରା ମମତାମୟୀ
ଦୋଷ କ୍ଷମା କରି ନିଏ କୋଳେଇ
ମୁଁ କିବା ନୁହଇ ସନ୍ତାନ ତୋର
କିପାଁ କରିଲୁ ମତେ ତୁ ପର
ଜୀବନ ଯିବ ତୋ ଦୁଆରେ ମାଆ ।୨।



-୮୪-

ଗଳାରେ ଭୁଜଙ୍ଗ ହାର ଶିରେ ପୁଣି ଗଙ୍ଗାଜଳ
ହାତେ ତୋର କମଣ୍ଡଳୁ ଦେହରେ ତୋ କଉପୀନ
ଏ କି ବେଶ ତୋର କହ ଦେବ ମହେଶ୍ୱର
ଲୋକେ ତତେ କହୁଛନ୍ତି ତୁ ବୁଲା ଫକୀର ।୦।

ଇନ୍ଦ୍ରଭୁବନ, ପାରିଜାତ ଫୁଲ, ଐରାବତ ହସ୍ତୀ ଥାଉ
ତୁଚ୍ଛ କରିଦେଲୁ କଇଳାସ ପୁରେ
ଆସ୍ଥାନ ତୋ ଜମାଇଲୁ
ଭୂତ, ପ୍ରେତ ମେଳେ ଶମଶାନ କୋଳେ
କି ସୁଖ ଥାଏ ତୋହର ହେ ମହେଶ୍ୱର ।୧।

ପାର୍ବତୀ ପରି ପତ୍ନୀ ପାଇଅଛୁ ଗଣେଶ, କାର୍ତ୍ତିକ ପୁତ୍ର
ନନ୍ଦୀ, ଭୃଙ୍ଗି ପରି ସେବକ ପାଇଛୁ..
ପାଇଛୁ କୈଳାସ କ୍ଷେତ୍ର
ଭୋଗ ନୁହେଁ ତ୍ୟାଗ ବଡ଼ ପାଶେ ତୋହର ।୨।

ଦିନେ ସଂସାରର ସୁଖ ନ ଭୋଗିଲୁ ପାର୍ବତୀ କରନ୍ତି ମାନ
ଜଟାଜୁଟଧାରୀ ତପୀଙ୍କର ବେଶେ
କରୁଥାଉ କିବା ଧ୍ୟାନ
ତୋ ମାୟା ବୁଝିବା ଶକ୍ତି କାହିଁ ମୋହର ।୩।



-୮୫-

ହେ ଶିବଶଙ୍କର ଭୋଳା ମହେଶ୍ୱର
ପାର୍ବତୀ ପତି ଜୟ ଡମ୍ବରୁଧର ।୦।

ଦେବ ଦେବ ମହାଦେବ
ତୁମେ ଦୁଃଖ, ଶୋକହାରୀ
ସଂସାର-ସାଗର ଏକା
ତୁମେ କରିଦେବ ପାରି
ତୁମେ ଶିବ ତୁମେ ସତ୍ୟ ତୁମେ ହିଁ ସୁନ୍ଦର ।୧।

କଇଲାସ ପତି ପ୍ରଭୁ ମହା ମୃତ୍ୟୁଞ୍ଜୟ
ତୁମ ନାମେ ଜନ୍ତୁପତି କରିଥାଏ ଭୟ
ଡମ ଡମ ଡମ୍ବରୁ ନାଦ ଶୁଣିଲେ
ତ୍ରିଭୁବନ ଶଙ୍କାରେ କାତର ହୁଏ
ତୁମେ ସୃଷ୍ଟିକର୍ତ୍ତା ତୁମେ ଧ୍ୱଂସ କରିପାର ।



-୮୭-

ମତେ ଦିଅଗୋ ବେଲପତର
ମତେ ଦିଅ ଗଇଣର ହାର
ଦୁଦୁରା ସଙ୍ଗତେ ଅରଖ ମିଶାଇ
ଗୁନ୍ଥିଦିଅ ଗୋଟେ ହାର
ମୁଁ ପୂଜିବି ଶିବଶଙ୍କର ।୦।

ବସିଥିବେ ପ୍ରଭୁ ଧ୍ୟାନେ ତୋଷିବି ତାଙ୍କୁ ଭଜନେ
ଘର୍ଷଣ କରିବି ଅଙ୍ଗେ ସଜାଇବି ଫୁଲ ରଙ୍ଗେ
କହିବି ପ୍ରଭୁ ହେ ! ଏ ମାୟା ସଂସାରୁ
କରିଦିଅ ମୋତେ ଉଦ୍ଧାର ।୧।

ବେଲପତ୍ର ଶିରେ ଦେବି ନମଃ ଶିବାୟ ଗାଇବି
ମନ୍ଦିର ବେଢ଼ାରେ ବୁଲି ନାଚୁଥିବି ଝୁଲି ଝୁଲି
କହିବି ପ୍ରଭୁ ହେ ! ଜନମେ ଜନମେ
ତୁମ ଦାସୀ ମୋତେ କର ।୨।



-୮୬-

କୋପେ ଦିଅ ତୁମେ ବର
ପୁଣି ତପେ ଦିଅ ବର
ତୁମର ଏ ଭୋଳା ମନ ଦେଖି ପ୍ରଭୁ
ଲାଗେ ମତେ ଭାରି ଡର
ହେ ଭୋଳା ମହେଶ୍ୱର ହେ ଭୋଳା ମହେଶ୍ୱର ।୦।

ମନ ମାନିଥିଲେ ଅଳପେ ହୁଅ ସନ୍ତୁଷ୍ଟ
ମନ ନ ମାନିଲେ ହୋଇଯାଅ ପ୍ରଭୁ ରୁଷ୍ଟ
ଡମ ଡମ ଡମ ଡମ୍ବରୁ ବାଜେ
ଶିବ ତାଣ୍ଡବରେ ପ୍ରଳୟ ସାଜେ
ତ୍ରିନେତ୍ରରୁ ଝରେ ଅନଳ ସୃଷ୍ଟି ହୁଏ ଛାରଖାର
ହେ ଭୋଳା ମହେଶ୍ୱର ।୧।

ସଂସାରତ୍ୟାଗୀ ତୁମେ ଅଟ ମହାଯୋଗୀ
ଦେବ ଦେବ ମହାଦେବ ଶ୍ମଶାନ ଭୋଗୀ
ଜଗତର ସୁଖ ପାଇଁ ଗରଳ ପିଇଲ
ମହାତ୍ୟାଗୀ ନୀଳକଣ୍ଠ ତୁମେ ବୋଲାଇଲ
ତୁମ ପୟରେ ଯେ ସେବଇ ଅଶେଷ ସୁଖ ଲଭଇ
ଘୁଞ୍ଚଇ ଦୁଃଖ ତାର ।୨।



-୮୮-

ଦେହ ମୋର କଇଲାସ
ମନ ମୋର ଶିବ ମନ୍ଦିର
ଦିବାନିଶି ମନପକ୍ଷୀ
ଗାଉଥାଏ ଶିବ ମନ୍ତର ।୦।

ଅଶ୍ରୁ ମୋର ଗଙ୍ଗାଜଳ ଆଖି ଦୁଇ ଗଙ୍ଗା
ହୃଦୟ ମୋ ତୀର୍ଥଭୂମି ଶିବ ରଙ୍ଗେ ରଙ୍ଗା
ଜୀବନ ମୋ ପୂଜାବେଦୀ
ପୂଜାରୀ ମୁଁ ତୁମର ।୧।

ବେଲପତ୍ରେ ଲେଖୁଥିବି ନିତି ଶିବ ଶିବ
ଗଇଣ ଫୁଲର ମାଳେ ସଜାଇବି ଲିଙ୍ଗ
ତୁମେ ଗତି ମୁକ୍ତି ପ୍ରଭୁ
ଏ ପାପୀ ଜୀବନର ।୨।



-୮୯-

ଗଙ୍ଗାଜଳ ମୁହିଁ ନହେଲେ ନାହିଁରେ
ବଣର ଦୁବୁରା ହେବି
ନିଇତି ନିଇତି ଭୋଳାଶଙ୍କରର
ସେବାରେ ମୁଁ ଲାଗୁଥିବି ।୦।
ବେଲପତର ମୁଁ ନ ହେଲେ ନାହିଁରେ
ଗଇଣ ଫୁଲ ମୁଁ ହେବି
ବାବାଙ୍କ ଗଳାରେ ସଂଜ ସକାଳରେ
ମାଳ ହୋଇ ଝୁଲୁଥିବି ।୧।
ଉଆସ ମୋହର ଲୋଡ଼ା ନାହିଁ ସତେ
ଶମଶାନବାସୀ ହେବି
ବାବା ପଛେ ପଛେ ଶିବ ଶିବ ଗାଇ
ସାରା ଦୁନିଆ ବୁଲିବି ।୨।
ନନ୍ଦୀ, ଭୃଙ୍ଗି ମୁହିଁ ହେବାକୁ ଚାହେଁନା
ବାସୁଆ ବଳଦ ହେବି
ମନ୍ଦିର ଦୁଆରେ ପ୍ରଭୁ ମୁଖ ଚାହିଁ
ଦିନରାତି ଜଗିଥିବି ।୩।
ଅଗୁରୁ, ଚନ୍ଦନ ନ ହେଲେ ନାହିଁରେ
ପାଉଁଶ ମୁଠାଏ ହେବି
ଦେହସାରା ବୋଳି ଶମଶାନ ଧୂଳି
ଜୟ ଭୋଳାବାବା ଭଜୁଥିବି ।୪।
ସରଗର ସୁଖ ଲୋଡ଼ା ନାହିଁ ମୋର
କଇଳାସବାସୀ ହେବି
ଶିବ, ପାର୍ବତୀଙ୍କ ଦାସୀ ବୋଲାଇ
ଜୀବନ ଧନ୍ୟ ମଣିବି ।୫।



-୯୦-

ସଖୀରେ ! ଦେଖ ମୋର ଶିବସୁନ୍ଦରକୁ
ସିଏ ପରା ମୋର ଜୀବନ-ଜୀବନ
ପୂର୍ଣ୍ଣିମା-ଇନ୍ଦୁ
ମୋ ପ୍ରେମର-ସିନ୍ଧୁ ।୦।
ଶମଶାନ ତାର ବାସ ହେଉ ପଛେ
ମୋ ପାଇଁ ସେ ରାଜଉଆସ
ବାସୁଆ ପିଠିରେ ବସି ବୁଲୁଥାଉ
ସେ ତ ମୋ ପାଇଁ ରାଜହଂସ
ଫକୀର ହେଉ ବା ଯୋଗୀ ହେଇଥାଉ
ସିଏ ମୋ ଜୀବନସିନ୍ଧୁ ।୧।
ପତ୍ନୀ, ପୁତ୍ର ଥାଇ ସେ ସଂସାରତ୍ୟାଗୀ
ମହାଯୋଗୀ ବୋଲାଉଥାଏ
ଲୋଭ, ମୋହ, ମାୟା ନ ପାରଇ ବାନ୍ଧି
ସେ ଧ୍ୟାନେ ମଗନ ରହେ
ଭାଙ୍ଗ ଖାଉ ଅବା ଗଂଜେଇ ଖାଉ ସେ
ସିଏ ମୋ ପ୍ରେମର-ମଧୁ ।୨।



-୯୧-

ହେ ଶିବ ହେ ଶଙ୍କର ଚନ୍ଦ୍ରମଉଳି
କଇଳାସ ପତି ନମଃ ଶ୍ମଶାନବିହାରୀ
ବିଭୂତି-ବିଲେପନ ଶ୍ରୀଅଙ୍ଗ ମାଧୁରୀ
ଭବ ଭୟ ଭଂଜନ ପାପ-ତାପ ହାରି ।୦।

ନମଃ ବୃଷଭବାହନ ଦେବ ଦେବ ହର
ମହାଘୋର ସଂକଟରୁ ହେ ଉଦ୍ଧାର କର
ବାଜି ଉଠୁ ଡମ୍ବରୁ ଡିବ ଡିବି ନାଦେ
ତାଣ୍ଡବ ରଚ ପ୍ରଭୁ ମହାକାଳ ସାଥେ
ତ୍ରିନେତ୍ର ମେଲାଇ ଦୁଃଖ ଦିଅ ଭସ୍ମ କରି ।୧।

ନମଃ ନୀଳକଣ୍ଠ ଯୋଗୀଜନ ବନ୍ଦନ
ତୁମ୍ଭ କରୁଣାରେ ସର୍ବ ରିଷ୍ଟ ଖଣ୍ଡନ
ମହାଯୋଗୀ, ମହାକାଳ, ମହାଶକ୍ତି, ରୁଦ୍ର
ସ୍ମରଣ ମାତ୍ରକେ ସର୍ବକାର୍ଯ୍ୟ ହୁଏ ସିଦ୍ଧ
ଦୟାକର ଭୋଳାନାଥ ଭବୁ ହୁଏ ପାରି ।୨।



-୯୨-

ମୁଁ ଜାଳିବି ଜାଳିବି ଜାଳିବି ଜାଗର
ଉପବାସେ ରହି ସାରା ରାତି ଉଜାଗର
ତେବେ ସିନା ପାଇବି ତତେ
ଦେବ ଦେବ ମହେଶ୍ୱର ।୦।

ଶହେ ଆଠ ବେଲପତ୍ର ଶିରେ ତୋର ଦେବି
ଶହେ ଆଠ ଜଳ ନେଇ ଶିରରେ ଢାଳିବି
ଶହେ ଆଠ ଚମ୍ପାଫୁଲ ଖୋଜି ମୁଁ ଆଣିବି
ଭକତିରେ ତୋହଠାରେ ଲାଗି କରାଇବି
ମନ୍ଦିର ବେଢ଼ାରେ ଭକତି ଅନ୍ତରେ...
ଗାଉଥିବି ଶିବ ପଞ୍ଚାକ୍ଷର ।୧।

ନ ଚାହିଁବୁ ଯେବେ ଥରେ କରୁଣା ନୟନେ
ଶିବ ତାଣ୍ଡବ ନାଚିବି ଡମ୍ବରୁର ତାନେ ତାନେ
ସଂସାର ଛାଡ଼ି ତୋ ପାଇଁ ଯୋଗୀ ହୋଇଯିବି
ଦରଶନ ପାଇଁ ତୋର ତପ କରୁଥିବି
ଦ୍ୱାରେ ଦ୍ୱାରେ ବୁଲି ଗାଉଥିବି ପ୍ରଭୁ
ଶିବ ମହିମା ଅପାର ।୨।



–୯୩–

ଭଜି ଶିବ ଶିବ
ଏ ଜୀବନ ଯିବ
ସତେ କିବା ଏଡ଼େ ଭାଗ୍ୟ ମୋର ହେବ
ହେ ବଇଦନାଥ ତୋ ଧାମରେ ମତେ ମୁକତି ମିଳିବ ।୦।

ଜୀବନପ୍ରଦୀପ ଲିଭିଗଲା ବେଳେ
ଯୋଗୀରୂପ ଥିବ ମୋ ବେନି ନୟନେ
ଓଁ ନମଃ ଶିବାୟଃ ଓଁ ନମଃ ଶିବାୟ
ଧ୍ୱନି ଶୁଭୁଥିବ ମୋ ବେନି ଶ୍ରବଣେ
ଜୀବ ଗଲାବେଳେ ଗଙ୍ଗାଜଳ ସାଥେ
ବେଲପତର ମୋ ମୁଖରେ ଦେବ
ହେ ବଇଦନାଥ ତେବେ ଯାଇ ମତେ ମୁକତି ମିଳିବ ।୧।

ଶମଶାନେ ଜୁଇ ଜଳିବାର ବେଳେ
ପଢୁଥିବ ଶ୍ଳୋକ ଶିବ ମନ୍ତରରେ
ହରପାର୍ବତୀଙ୍କ ଯୁଗଳ ମୂରତି
ଆଙ୍କିଦେବ ମୋର ସମାଧିପୀଠରେ
ଶିବଙ୍କର ପ୍ରିୟ ସୋମବାରରେ
ସତେ କି ମରଣ ହେବ
ହେ ବଇଦନାଥ ତେବେ ଯାଇ ମତେ ମୁକତି ମିଳିବ ।୨।



-୯୪-

ତୁ କାଠ ପଥରର ଦିଅଁ
ମୋର ରକତ ମାଉଁସ ଦେହ
ତୁ ସହିପାରୁ ଦୁଃଖ ଦରଦକୁ
ମୋ ପାଇଁ ସହିବା ସହଜ ନୁହଁ ।୦।

ତତେ ଗାଳିଦେଲେ ତୋ' ମନକୁ ବାଧେନାହିଁ
ତତେ ମାଡ଼ ଦେଲେ ତୋ ଦେହକୁ କାଟେନାହିଁ
ମତେ ଗାଳିଦେଲେ ଅବା ମାଡ଼ଦେଲେ
ନୀରବ ରହିବା ସହଜ ନୁହଁ ।୧।

ତୁ ହସୁଥାଉ ପ୍ରଭୁ ଟାଣ କଥା ଯିଏ କହୁ
ତୁ କ୍ଷମା କରିଦେଉ ଅପମାନ ଯିଏ ଦଉ
ମୁଁ ପାରେନା ହସି ଅବା କ୍ଷମା ଦେଇ
ମୋ ପାଇଁ ଭୁଲିବା ସହଜ ନୁହଁ ।୨।

ସେଥିପାଇଁ ପ୍ରଭୁ ବୋଲାଉ ଦୟାସାଗର
ମତେ ଦିଅନ୍ତି ନିନ୍ଦା ପାପୀ, ତାପୀ, ହୀନ, ଛାର
ମୋ ପାଇଁ ଅଭିନୟ ସହଜ ନୁହଁ ।୩।

—୯୫—

କି ସୁନ୍ଦର ଏଇ ଧରା
ପିତା, ମାତା, ବନ୍ଧୁ ଭରା
ଭରା ପୁଣି ଦୟା, କ୍ଷମା
ସବୁ ରଖିଛୁ ସାଇତି
କି ଅବା ତତେ ମାଗିବି ।୦।

ମାଗିବା ଆଗରୁ ଦେଇଛ ହେ ପ୍ରଭୁ
ସ୍ୱର୍ଗଠୁ ସୁନ୍ଦର ଘର
ଦିନରାତି ଯହିଁ ଝରିପଡୁ ଅଛି
ତୋ ସ୍ନେହ, କରୁଣା ଝର
ମୁଁ ମୂଢ଼ମତି ବୁଝି ନ ପାରୁଛି
ତତେ କିଆଁ ଦୋଷ ଦେବି ।୧।

ମନକୁ ଆକଟ କରିବା ପାଇଁକି
ଦେଖାଇଛୁ ଭକ୍ତି ପଥ
ଭବସାଗରକୁ ପାରି ହେବା ପାଇଁ
ଦେଇଛୁ ଧରମ-ନାବ
ଅବୁଝା ମନ ନ ବୁଝଇ କିଛି
ଅବାଟେ ଧାଉଁଛି ନିତି ।୨।

ଦୟାସାଗର ହେ କରୁଣାରୁ ଉଣା
କରିଲେ ଯବି ମୁଁ ଭାସି
ତୋ ନାମକୁ ଭଜି ତୋ ଗୁଣକୁ ଗୁଣି
ମୋହକୁ ପାରିବି ନାଶି
ଏତିକି ମାଗୁଣି ମରଣ ପରେ
ତୋ'ଠାରେ ଲୀନ ହୋଇବି ।୨।



-୯୭-

କି ରୂପରେ ପୂଜିବି ମୁଁ
କି ନାମରେ ଡାକିବି
ତୁହି ତ ଅସୀମ ଅନନ୍ତ
ତୋର ଲୀଳାଖେଳା ବୁଝିତ
ପାରେନା ପ୍ରଭୁ
ନାହିଁ ତୋର ଆଦିଅନ୍ତ ।୦।

ତ୍ରେତୟାରେ ରାମ ଦ୍ୱାପରେ ଶ୍ରୀକୃଷ୍ଣ
ସତ୍ୟଯୁଗେ ହୋଇଲୁ ବାମନ
କଳି ଯୁଗେ ପ୍ରଭୁ କଲ୍‌କୀ ଅବତାରେ
କଳୁଷ କରୁଛୁ ଦମନ
ଅବତରି ପ୍ରଭୁ ଏ ଧରାଧାମରେ
ଦୁଷ୍ଟ ନାଶି ପାଳୁ ସନ୍ଥ ।୧।
ତୋ' ଦଶରୂପର ଉପମା ନାହିଁଟି
ବାରବାର ଖୋଜେ ଏ ନୟନ
ମାୟା, ମୋହ ତେଜି ଚରଣେ ତୋହର
ଦାସ ହୋଇ ରହିବାକୁ ମନ
ସତେ କି ପ୍ରଭୁ ଏଡ଼େ ଭାଗ୍ୟ ହେବ
ପାଶେ ନେବୁ ଦୀନନାଥ ।୨।



-୯୭-

ମୋହନ ମୁରଲୀ ସ୍ୱନ
ପାଗଳ କରିଛି ମନ
ପାଶେ ଆସି ନ ଦେଉ ଧରା
ମତେ ଜଳାନା ଜଳାନା
କାହ୍ନାରେ ରହିଲା ରାଣ ।୦।

ଆସିବୁନି ପାଶେ ଯଦି
ଡାକୁଛୁ ତୁ କାହିଁକି
ମୁଁ ନୁହଁଇ ରାଧାରାଣୀ
ଅପବାଦ ସହିବି
ରାଜାର କୁମର ହୋଇ
ଲବଣୀ ତୁ ଚୋରାଉ
ମାଆଙ୍କୁ ପାଟି ଦେଖାଇ
ଭେଳିକି ତୁ ଲଗାଉ
କୁହୁକ ଜାଣୁ ତୁ ବୋଲି ଦେବିନି ତତେ ମୋ ମନ ।୧।

ରୂପ ତ ପାଇଛୁ କଳା
ନାଆଁ ପୁଣି ନନ୍ଦବଳା
ଗୋପଦାଣ୍ଡେ ଯାଉଥିଲେ
ଗୋପୀ ହୁଅନ୍ତି ଉତଳା
ଟିକି ପିଲାଟିଏ ହୋଇ
ବସନ ଚୋରାଇଥାଉ
ଦହିହାଣ୍ଡି ବିକିଗଲେ
ଘାଟ ଜଗି ବସିଥାଉ
ତୁ ନଟକୁଟିଆ ବୋଲି ଭରସି ପାରେନା ମନ ।୨।



-୯୮-

ଆର ଜନମରେ ତୋ ବଡ଼ଦାଣ୍ଡରେ
ମତେ ଭିକାରୀଟେ କରି ଦେଏରେ
ଭକତଙ୍କ ପାଖେ ହାତ ମୁଁ ପତାଇ
ଭିକ ମାଗିବି ତୋ ଗୁଣ ଗାଇରେ ।୦।

ଖୁଦ ଦଉ ଅବା ଦଉ କେ କଉଡ଼ି
ଆନନ୍ଦେ ଘେନିବି ଛାଡ଼ିବିନି ରଡ଼ି
କପାଳରେ ଯାହା ଲେଖା ଅଛି ମୋର
ସାକ୍ଷୀ ପରା ତୁହି କାଳିଆଠାକୁର
କପାଳ ଲିଖନ କେ କରିବ ଆନ
ବଡ଼ଠାକୁର ତୁ ମୋର ସାହାରେ ।୧।

ଲୋଡ଼ା ନାହିଁ ମୋର ରାଜଉଆସ
ଇଚ୍ଛା ନାହିଁ ଲଭେ ଯଶ, ପୌରୁଷ
ମାଟି ଦେହ ମିଶିଯିବ ମାଟିରେ
ତୋ ନାମକୁ ଭଜି ଭଜି ତୁଣ୍ଡରେ
ନିର୍ମାଲ୍ୟ କଣିକା ପାଇବାକୁ ଲେଖା
ହୋଇଛି କି ଜୀବନର ଶେଷରେ ।୨।



–୯୯–

ଶେଷବେଳେ ଥିବ ତୁଣ୍ଡରେ
ଖାଲି ତୋ ନାମ
ଗୋବିନ୍ଦ, ଗୋପାଳ, ମଦନମୋହନ
ଶ୍ୟାମ ।୦।

ଶେଷବେଳେ ଥିବ ଆଖିରେ
ପ୍ରଭୁ ତୋ' ରୂପ
ସୁଖ ବୋଲି ଯାହା ଦିଶୁଛି
ହେବ କୁରୂପ
ଉର୍ଦ୍ଧ୍ୱକୁ ନୟନ ଟେକି ଡାକୁଥିବି ବନମାଳୀ
ପଦ୍ମପାଦେ ଦିଅ ସ୍ଥାନ ।୧।

ଶେଷବେଳେ ଥିବ ତୁଣ୍ଡରେ
ନିର୍ମାଲ୍ୟ କଣିକା
ସଂସାରର ଯେତେ ସୁଖକୁ
ତୁଚ୍ଛ କରିଦେବି ସଖା
ଦୁଇବାହୁ ଟେକି...ଭଜୁଥିବି ନାମାବଳୀ
ଲୋଡୁଥିବି ଦରଶନ ।୨।

-୧୦୦-

ମତେ ଯଦି ପଚାରେ କେ
କାହାକୁ ମୁଁ ଭଲପାଏ
ଲାଜସରମ ନ କରି କହିବି
(ମୁଁ) କାଳିଆକୁ ଭଲପାଏ
ନୀଳାଚଳିଆକୁ ଭଲପାଏ...।୦।

କାଳିଆ ମୋ' ପ୍ରେମ...କାଳିଆ ମୋ'ପ୍ରୀତି
ଯା' ପାଇଁ ମନ ଝୁରେ ଦିନରାତି
କାଳିଆ ମୋ' ସୁଖ, ଶରଧା, ସରାଗ
ତା' କଳା ହେଉ ମୋର କଳଙ୍କର ଦାଗ
ତା' ମୁହଁକୁ ଚାହିଁଦେଲେ ଦୁଃଖ ମୁଁ ଭୁଲିଯାଏ
ମୁଁ କାଳିଆକୁ ଭଲପାଏ...
ନୀଳାଚଳିଆକୁ ଭଲପାଏ...।୧।

ମୀରାବାଈ ପରି ହୁଏ କଳଙ୍କିନୀ
ଶ୍ରୀରାଧାଙ୍କ ପରି ହୁଏ ଦୋଚାରୁଣୀ
ଜନମ ଜନମ ପାଇଁ ତା' ସାଥେ ମୋର
ହାତଗଣ୍ଠି ପଡ଼ିଛି ସିଏ ମୋ' ନିଜର
ତା' ସୁଖରେ ମୋ' ସୁଖ...ତା' ଦୁଃଖରେ ଦୁଃଖ ମୋର
(ମୁଁ) କାଳିଆକୁ ଭଲପାଏ...
ନୀଳାଚଳିଆକୁ ଭଲପାଏ...।୨।



-୧୦୧-

କି କହିବି ତତେ କାଳିଆ-ସାଆନ୍ତ
ଦୁଃଖ ତୁ ଦେଇଛୁ ଯେତେ
ହିସାବ କରିଲେ ଜୀବନଟା ସାରା
ଅଣ୍ଟିବନି ପରା ସତେ ।୦।
ସୁଖ ବୋଲି ଯାହା, ହାତେ ମୋ ଆସିଛି
ପାଣିଫୋଟକାଟେ ପରି
ନିମିଷକେ କାହିଁ ଉଭେଇ ଯାଇଛି
ପାରିନି ମୁଁ ତାକୁ ଧରି
ତଥାପି ପ୍ରଭୁ ହେ ହାରିଯାଇନାହିଁ
ଚାଲିଛି କରମ ପଥେ ।୧।
ଧନ ବୋଲି ଯାହା ଦେଲୁ ମୋ' ଅଣ୍ଟିରେ
ଛୁଇଁଲେ ହୋଇଲା ମାଟି
ପୂରୁବ ଜନମ କର୍ମଫଳ ଅବା
ଏ ଜନମେ ଭୋଗୁଅଛି
ତଥାପି ପ୍ରଭୁ ହେ ଡରି ଯାଇନାହିଁ
ଧରିଅଛି କାତ ହାତେ ।୨।
ଏ ସାରା ସଂସାର ତୋହରି ଭିଆଣ
କଢ଼େଇ ନଉ ତୁ ବାଟ
ମିଛ ମାୟା ମୋହ ପସରାରେ ଭରା
ଏଇ ଯେ ସଂସାର ହାଟ
ତଥାପି ପ୍ରଭୁ ହେ ଦୋଷ ତ ଦେଇନି
ଆସିଛି ବିପତ୍ତି ଯେତେ ।୩।



-୧୦୨-

ନୀଳ ଦରିଆ କୂଳେ ଯା' ଘର
ଦରିଆ ପରି ମନଟି ଯା'ର
ସିଏ ମୋର ବଡ଼ ବନ୍ଧୁ
ସାରା ଦୁନିଆଁ ଝୁରୁଛି ତାକୁ
ନାମ ତାର କୃପାସିନ୍ଧୁ ।୦।
ହାତ ଦେଇଛି ସେ ଭାତ ଦେଇଛି
ସଂସାରଯାକର ସୁଖ ଦେଇଛି
ଡାକିଦେଲେ କାନ ଡେରି ଶୁଣୁଛି
ମିଛେ କିଆଁ ତାକୁ ନିନ୍ଦୁ ।୧।
ଦେହଟା ସିନା ପଥରରେ ଗଢ଼ା
ମନଟି ତାହାର ମମତାଭରା
ସଂସାରଯାକର କଥା ବୁଝୁଛି
କର୍ମ ଘେନି ଫଳ ବାଣ୍ଟିଦେଉଛି
ମିଛେ କିଆଁ ତାକୁ ନିନ୍ଦୁ ।୨।





୧୯୫୬ ମସିହାରେ କେନ୍ଦ୍ରାପଡ଼ା ଜିଲ୍ଲା ବାଲିଆରେ ଶ୍ରୀମତୀ ପ୍ରମିଳା ପତିଙ୍କର ଜନ୍ମ । ସେ ଏକାଧାରରେ ଜଣେ ଗାଳ୍ପିକା, ନାଟ୍ୟକାର ଏବଂଗୀତିକାର । ୧୯୮୯ ମସିହାରୁ ସେ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗୀତିକବି । ସେ ପ୍ରଜ୍ଞା ଶିଶୁକିଶୋର ସାହିତ୍ୟ ସମ୍ମାନ, ସୁଲେଖା ଶିଶୁଗୀତି ଓ କବିତା ସମ୍ମାନ, ଉଦୟଭାନୁ ସାହିତ୍ୟ ସମ୍ମାନ, ତୁଳସୀ କ୍ଷେତ୍ର ସମ୍ମାନ, ଫକୀରମୋହନ ଗାଳ୍ପିକା ସମ୍ମାନ ଆଦି ବିଭିନ୍ନ ସାହିତ୍ୟ ଅନୁଷ୍ଠାନରୁ ସମ୍ମାନିତ ।

ତାଙ୍କ ରଚିତ 'ଶତାବ୍ଦୀର ଯନ୍ତ୍ରଣା' (କବିତା ସଂକଳନ), 'ଅହଲ୍ୟା' (କ୍ଷୁଦ୍ରଗଳ୍ପ ସଂକଳନ), 'ଝରକା ପାଖର ଜହ୍ନ' (ଗୀତିକବିତା ସଂକଳନ) ପ୍ରକାଶିତ ହୋଇ ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଛି ।

-ପ୍ରକାଶକ

